ପ୍ରାଚୀ ଗ୍ରନ୍ଥମାଳା — ଅଷ୍ଟାଦଶ

# ଗୁରୁଭକ୍ତି ଗୀତା




ତୃତୀୟ ଖଣ୍ଡ

ପ୍ରକାଶକ

ଉତ୍କଳ ବିଶ୍ୱବିଦ୍ୟାଳୟ

# ଶ୍ରୀକୃଷ୍ଣ ଭକ୍ତି ଗୀତା

( ତୃତୀୟ ଖଣ୍ଡ )




ଅଚ୍ୟୁତାନନ୍ଦ ଦାସଙ୍କ କୃତ

ଟୀକା ଓ ମୁଖବନ୍ଧ ସହ

ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା

ସଙ୍କଳିତ ଓ ପ୍ରକାଶିତ

୧୯୬୬

ମୂଲ୍ୟ — ପାଞ୍ଚ ଟଙ୍କା ମାତ୍ର

# ମୁଖବନ୍ଧ

ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ଜୀବନ ଚରିତ ଓ ମାହାତ୍ମ୍ୟ ଅଣାକାର ସଂହିତାର ମୁଖବନ୍ଧରେ ସୁବିସ୍ତୃତ ଭାବରେ ଲିଖିତ ହୋଇଅଛି । ଗୁରୁଭକ୍ତି ଗୀତାର ଦ୍ୱିତୀୟ ଖଣ୍ଡର ମୁଖବନ୍ଧରେ ମଧ୍ୟ କିଛି କୁହା ହୋଇଅଛି । ବର୍ତ୍ତମାନ ସେ ବିଷୟରେ ଆଉ କିଛି କହିବା ଆବଶ୍ୟକ ମନେକରୁନାହିଁ ।

ମହାପୁରୁଷ ତ୍ରିକାଳଦର୍ଶୀ ଥିଲେ ଏହା ତାହାଙ୍କ ଭକ୍ତପରମ୍ପରାରେ କଥିତ । ମହାପୁରୁଷଙ୍କ ମାଳିକାରେ ଭବିଷ୍ୟତ ବିଷୟମାନ କଥିତ ଥିବାର ପ୍ରକାଶ ହୁଏ । ଐତିହାସିକ ସେ ଦୃଷ୍ଟିରେ ବିଷୟମାନ ଦର୍ଶନ କରେ ନାହିଁ । ଗୁରୁଭକ୍ତି ଗୀତା ମହାପୁରୁଷ ଅଚ୍ୟୁତାନନ୍ଦଙ୍କ ଦ୍ୱାରା ରଚିତ ହେବା ବିଷୟରେ ଐତିହାସିକ ସନ୍ଦିହାନ, କାରଣ ଗୁରୁଭକ୍ତି ଗୀତା ଆଦ୍ୟ ଖଣ୍ଡ ଅଷ୍ଟମ ପଟଳରେ—

ଅଚ୍ୟୁତର ବଚନ ସେ ଧର ଗୋପସୁତ ।
ଗୁରୁଭକ୍ତି ଗୀତା ତୁମ୍ଭଙ୍କୁ ହେବ ହିତ ॥
ତୁମ୍ଭ ଅଂଶମାନ ଏହି ଗ୍ରନ୍ଥ ଯେ ପଢ଼ିବ ।
ଆଲୁଅ ହୋଇବ ତାଙ୍କ ସମସ୍ତ ଦିଶିବ ॥
ହରେକୃଷ୍ଣ ବୋଲିଣ ଯେ ଯାଜନ ହୋଇବ ।
ସେ ଯାଜନ କାଳେ ଏହି ଗ୍ରନ୍ଥ ପ୍ରକାଶିବ ॥

ପୁନଶ୍ଚ:—୧୧ଶ ପଟଳରେ—

କେତେ କହିବା କଳି କଥା । ଶୁଣି ଗୁଣିଲେ ବଡ଼ ବ୍ୟଥା ॥
ରାମଚନ୍ଦ୍ରର ଅଂଶ ଯିବ । ମରହଟ୍ଟାର ରାଜ୍ୟ ହେବ ॥
ମଲିକା ହେବ କିଛି ଦିନ । ଚହ୍ୱାଣ ନେବ ସ୍ୱେନ୍ଦ୍ର ସ୍ଥାନ ॥
ଏ ଅନ୍ତେ ଦ୍ୱିଜ ରାଜା ହେବ । କଳଙ୍କି ତେବେ ପ୍ରକାଶିବ ॥
ବୀରକେଶରୀ ରାଜାଠାରୁ । କଳଙ୍କି ପସାର ବହିରୁ ॥

ଲିଖିତ ଉଦ୍ଧୃତାଂଶ ଦ୍ୱୟରୁ ପ୍ରତୀତ ହୁଏ ଏହି ଗ୍ରନ୍ଥ ଲେଖକ ହରେକୃଷ୍ଣ ଦେବଙ୍କ ପରେ ମରହଟ୍ଟା ରାଜତ୍ୱ ଓ ବୀରକେଶରୀ ଦେବଙ୍କର ସମସାମୟିକ ଥିଲେ । ବୀରକେଶରୀ ଦେବ ୧୭୦୩ ଶକାବ୍ଦ ବା ୧୭୮୧ ସାଲ ପର୍ଯ୍ୟନ୍ତ ରାଜତ୍ୱ କରିଥିବା ଇତିହାସରୁ ଜଣାଯାଏ । ଐତିହାସିକ ଦୃଷ୍ଟିରେ ଏ ଗ୍ରନ୍ଥ ଅଷ୍ଟାଦଶ ଶତାବ୍ଦୀର ମଧ୍ୟ ଭାଗରେ ଲିଖିତ ହେବା ସମ୍ଭବପର ।

ତନ୍ତ୍ରସମ୍ପ୍ରଦାୟର ଲୋକଙ୍କ ମତରେ ମହାପୁରୁଷ ତ୍ରିକାଳଦର୍ଶୀ ତହୁଁ ସେ ଏ ଗ୍ରନ୍ଥ ଲେଖି ଅଛନ୍ତି । ସେ ଯାହାହେଉ ଗୁରୁଭକ୍ତି ଗୀତା ଅତି ଉପାଦେୟ ଗ୍ରନ୍ଥ । ଏହି ଗ୍ରନ୍ଥ ପାଠ କଲେ ଲୋକ ଯଥାଯଥ ଭାବରେ ଧର୍ମାଚରଣ କରି ନିଜର ଓ ଜଗତର ମଙ୍ଗଳ ସାଧନ କରିବ ଏବଂ ହରିପ୍ରେମ ରସରେ ବିହ୍ୱଳ ହୋଇ ପରମାନନ୍ଦ ଲାଭ କରିବ । ଉତ୍କଳର ପଞ୍ଚସଖାମାନେ ଜ୍ଞାନମିଶ୍ରା ଭକ୍ତିରେ ଅନୁରାଗୀ ଥିଲେ ଶୁଦ୍ଧା ଭକ୍ତିରେ ଯେପରି ଭକ୍ତ ପ୍ରେମ-ପାଗଳ ଜ୍ଞାନମିଶ୍ରା ଭକ୍ତିରେ ମଧ୍ୟ ସେ ତଦ୍ବତ୍ । ଏ ବିଷୟରେ ବିଚାର ଅନ୍ୟତ୍ର ହୋଇଅଛି । ଦୁଃଖର କଥା ବିଶେଷ କାରଣ ବଶତଃ ଗ୍ରନ୍ଥର ମୁଦ୍ରଣକାର୍ଯ୍ୟରେ ଅନେକ ଭ୍ରମ ପ୍ରମାଦ ରହି ଯାଇଅଛି । ସହୃଦୟ ପାଠକଗଣ ଶୁଦ୍ଧିପତ୍ର ସାହାଯ୍ୟରେ ପାଠ ସଂଶୋଧନ କରି ଅନୁଗ୍ରହ ପୂର୍ବକ ଗ୍ରନ୍ଥ ଅଧ୍ୟୟନ କରିବେ ।

ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି—

--○--

# ସୂଚୀପତ୍ର

ଓଁ

# ଶ୍ରୀ ଗୁରୁଭକ୍ତି ଗୀତା

## ତୃତୀୟ ଖଣ୍ଡ

---

## ପ୍ରଥମ ପଟଳ

ଶ୍ରୀ ଗଣେଶାୟ ନମଃ, ଅବିଘ୍ନମସ୍ତୁ ।

ନମସ୍ତେ ପ୍ରଭୁ ଗୁରୁଦେବ । ଭବ-ସମୁଦ୍ରେ ତୁମ୍ଭେ ନାବ ॥
ତୁମ୍ଭେ ଯେ ଅଟ କର୍ଣ୍ଣଧାର । ତୁମ୍ଭ ଦୟାରେ ସିନ୍ଧୁ ପାର ॥
ଦୟା ଯେ ତୁମ୍ଭ ପବନ କଲେ । କୃଷ୍ଣ କରୁଣା ଜଲେ ଭଲେ ॥
ତୁମ୍ଭ କରୁଣା ଯଦି ହୋଇ । ବୈଷ୍ଣବ ହୃଦେ ଦୟା ବହି ॥
ଏ ଦେହ ଅଟଇ ଯେ ନାବ । ଧୀବର ତୁମ୍ଭେ ଗୁରୁଦେବ ॥
କୃଷ୍ଣ ସୁପବନ ଅଟନ୍ତି । ବୈଷ୍ଣବ ଆହ୍ଲଲ ପକାନ୍ତି ॥
ଗୁରୁ କୃଷ୍ଣ ଯେ ବଇଷ୍ଣବ । ଯେବେ କରୁଣା ତାଙ୍କ ହେବ ॥
ନାବ ଲଗିବ କୂଳେ ଯାଇ । ତେବେ ଚୌରାଶୀ ନ ଲଗଇ ॥
ମୁକୁନ୍ଦ ଅନନ୍ତ ଏ ବେନି । କର ଯୋଡ଼ି କଲେ ଦଇନ ॥
କେ ରୂପେ ଗୁରୁ ଅଙ୍ଗ ନେହ । ଫିଟିବ ଭବବନ୍ଧ ମୋହ । ୧୦ ।
ଶୁଣ ମୁକୁନ୍ଦ ଅନନ୍ତ ହେ । ଗୋମ ମନ୍ତ୍ର ତୁମ୍ଭେ ଦୁହେଁ ॥
ଖୋଲ କର୍ତ୍ତାଳ ଗୁରୁ ଦେଇ । ତୁମ୍ଭେ ସୁମରି ଭକ୍ତି ପାଇଁ ॥
ଗୋଲୋକ ଆୟୁଧ ତୁମ୍ଭର । ତୁମ୍ଭେ ରଖିଲେ ସିନା ପାର ॥
ମୃଦଙ୍ଗ ଶଙ୍ଖ ଯେ ଅଟଇ । କର୍ତ୍ତାଳ ଚକ୍ରରୂପ ହୋଇ ॥
ଏ ଶଙ୍ଖ ଚକ୍ର ତୁମ୍ଭ କରେ । ଯମ ଡରଇ ତୁମ୍ଭ ପୁରେ ॥
ଅକାଳ ମୃତ୍ୟୁ ଭୟ ନାହିଁ । କେବଳ କାଳ ମୃତ୍ୟୁ ହୋଇ ॥
ବ୍ରହ୍ମା ବିଷ୍ଣୁ ଯେ ଦେବତାୟେ । କାଳ ପୂରିଲେ ମୃତ୍ୟୁ ହୋଏ ॥

ଦେବତା ହୋଇଲେ ମର୍ତ୍ତ୍ୟରେ । ମରନ୍ତି ନରଙ୍କ ସଙ୍ଗରେ ॥
ବସ୍ତୁହିଁ ମର୍ତ୍ତ୍ୟ ହେଲେ ଜାତ । ଦେହ ଛାଡ଼ନ୍ତି ମାୟାରେ ତ ॥
ଜୀବନ୍ତମାନ ରହୁଥିବ । ତୁମ୍ଭେହେଁ ଦେହ ତ ଛାଡ଼ିବ । ୨୦ ।
ଗୋପାଳ କୁଳ ଉଦ୍ଧାରଣ । ତୁମ୍ଭ ଆତ୍ମର ଜନ୍ମ ପୁଣ ॥
ତୁମ୍ଭେ ମୁଁ ଶୂଦ୍ର ଅଂଶେ ଜାତ । ନୀର କ୍ଷୀର ସେ ଯେସନେ ମତ ॥
ନୀର କ୍ଷୀର ଯେ ସମ କଲ । ମିଶିଲେ ନୀର ହୋଏ ବାଳ ॥
ଅଚ୍ୟୁତ ଆମ୍ଭେ ଶୂଦ୍ରେ ଜାତ । ଶୂଦ୍ର କୁଳରେ ଗୋପସୁତ ॥
ସନ୍ଧି ବସନ୍ଧି ତୁମ୍ଭେ ଜାଣ । ପରମ ଗୁରୁ କଥା ପୁଣ ॥
ମନ୍ତ୍ର ପୀଠ ଗୁରୁମାନ । ଜାଣନ୍ତି ସକଳ ଯେ ଜନ । ୨୫ ।
ନିର୍ଗୁଣ ଗୁରୁ ଅଙ୍ଗ ପୁଣ । ଜାଣନ୍ତି ଯେତେ ସୁରଗଣ ॥
ଜନମେ ଜନମେ ଯେ ତୁମ୍ଭେ । ଏକ ଆତ୍ମା ଯେ ତୁମ୍ଭେ ଆମ୍ଭେ ॥
ସତ୍ୟରେ ଋଷି ଅଙ୍ଗେ ଜାତ । ତ୍ରେତାରେ ବାନରେ ସମ୍ଭୂତ ॥
ଦ୍ୱାପରେ ଗୋପାଳେ ଜନମ । କଳିରେ ଶୂଦ୍ରୀ ଶୂଦ୍ରସମ । ୩୦ ।
ତୁମ୍ଭେ ଶୂଦ୍ରକୁ ନିସ୍ତାରଣେ । ଜନମ ହେଲ ଗୋପଗଣେ ॥
ନିସ୍ତାର ପଥ ହେତୁ କର । ନିର୍ଗୁଣ ଗୁରୁ ମନେ ଧର ॥
ଶ୍ରୀଗୁରୁ ମହାଶୂନ୍ୟ କହି । ତହୁଁ ବ୍ରହ୍ମ ଯେ ତହିଁ ହୋଇ ॥
ତୃତୀୟେ ପରଂବ୍ରହ୍ମ ହେଲେ । ଚତୁର୍ଥେ ବ୍ରହ୍ମ ଯେ ହୋଇଲେ ॥
ପଞ୍ଚମେ ନୀଳ ଦୀକ୍ଷା ପାଇ । ଓଁକାର ତହିଁ ପୁଣ ହୋଇ । ୩୫ ।
ତହନ୍ତେ ପରଂବ୍ରହ୍ମ ଶିଷ୍ୟ । ଆଦିମୂଳ ଯେ ପରକାଶ ॥
ପୁଣ ପ୍ରକୃତି ଦୀକ୍ଷା ପାଇ । ତହିଁ ବିନ୍ଦୁ ଯେ ଶେଷ ହୋଇ ॥
ପୁଣ ଯେ ବ୍ୟୋମ ଶିଷ୍ୟ ହେଲେ । ପ୍ରଣବ ପୁଣ ସଞ୍ଚରିଲେ ॥ ୩୮ ।
ପୁଣ ଯେ ମହାତତ୍ତ୍ୱ ଶିଷ୍ୟ । ଆଦି ନାରାୟଣ ପ୍ରକାଶ ॥
ଏମନ୍ତେ ନାରାୟଣ ଅଂଶେ । ସନକାଦି ଯେ ହେଲେ ଦାସେ । ୪୦ ।
ମାର୍କଣ୍ଡ ଯେ ମାର୍ଗ ବହି । ନାରଦ କୃପାକଲ କହି ।

---

୨୫-୧—ପୀଡ଼—ଖ; ପୀଢ଼—କ । ୩୫-୧—ବ୍ରଜ—କ, ଖ । ୩୮-୧—ବ୍ରମଶିଷ୍ୟ—କ, ୩୮-୨—ପ୍ରଲମ୍ବ—ଗ, କ ।

ସେ ଗୁଣମଠ ଯେ ବୋଲଇ । ଏମନ୍ତେ ସତ୍ୟଯୁଗ ଯାଇ ॥
ତ୍ରେତା ଯୁଗରେ ମଠ କୃତ । ଦଶ ସନ୍ନ୍ୟାସୀ ସେ ଅଚ୍ୟୁତ ॥
ନଳର ନିଷ୍କ ଭୋଗ କଲ । ସନ୍ନ୍ୟାସ ଧର୍ମ ଆଚରିଲ । ୪୪ ।
ରାମାନନ୍ଦ ଯେ ଜ୍ଞାନାଦତ୍ତ୍ୟ । ବିଷ୍ଣୁ ସ୍ୱରୂପ ମାଧବ ଜ । ୪୫ ।
ଏ ତିନି ସନ୍ନ୍ୟାସୀ ବୈଷ୍ଣବ । ତିନି ସଂପ୍ରଦା କରେ ଜୀବ ॥
ରାମାନନ୍ଦ ଯେ ଜ୍ଞାନାନନ୍ଦ । ବିଷ୍ଣୁ ଶ୍ୟାମ ଯେ ମାଧବନ୍ଦ ॥
ଏ ତିନି ସଂପ୍ରଦା ଅଟନ୍ତି । ବୈଷ୍ଣବ ଜନ ଏହା ଚିନ୍ତି ॥
ସଭାରେ ଗୁରୁପଣ କଲେ । ଜ୍ଞାନ୍ତାର ଗୁରୁ ସମର୍ପିଲେ । ୪୯ ।
ଯାଆନ୍ତି ନାରାୟଣ ପାଦେ । ମହାଶୂନ୍ୟକୁ ଭେଟ ନୋହେ ॥
ଏ ମହାଶୂନ୍ୟ ବନ୍ଧ ନାହିଁ । ଗୁରୁ ଦର୍ଶନ ତାର କାହିଁ । ୫୧ ।
ମହାଶୂନ୍ୟକୁ ନ ଚହ୍ନିଲେ । ଅଣଗୁରୁଆ ବୋଲି ଭଲେ ॥
ଗୁରୁ ଚହ୍ନାନ୍ତି ମହାଶୂନ୍ୟ । ତେବେ ବୋଲିବା ଗୁରୁ ଧନ୍ୟ ॥
ଯେ ଶିଷ୍ୟ ମହାଶୂନ୍ୟ ଚହ୍ନେ । ଶିଷ୍ୟ ବୋଲିବା ସେହୁ ଜନେ ॥
ଯେ ମହାଶୂନ୍ୟ ଚହ୍ନି ନାହିଁ । ସେ ଜୀବ ଜନ୍ମଭବ କାହିଁ ॥
ମହାଶୂନ୍ୟରେ ଗୁରୁ ସ୍ଥାନ । ମହାଶୂନ୍ୟଟି ତନ୍ତ୍ରି ଧନ ॥
ମହାଶୂନ୍ୟଟି ଯାହା କହ । ଅକାର ବିନ୍ଦୁ ସେ ଅଟଇ ॥
ବ୍ରହ୍ମ ବୋଲିଣ ଯାହା କହ । ଉକାର ମାତ୍ରା ସେ ଅଟଇ ॥
ବୀଜ ବୋଲିଣ ଯାହା କହ । ଏକାର ମାତ୍ରା ସେ ଅଟଇ ॥
ଏକାର ବୋଲି ଯାହା କହ । ଆକାର ତାର ସେ ଅଟଇ ॥
ଆଉ ବ୍ରହ୍ମ ସେ ଯାହା କହ । ଇକାର ମାତ୍ରା ସେ ଅଟଇ ॥
ଆଦିମୂଳ ଯେ ଯାହା କହ । ସେ ଅଣମଣ୍ଡଳ ବୋଲଇ ॥
ପ୍ରକୃତି ବୋଲି ଯାହା କହ । ସେ ଅର୍ଦ୍ଧମାତ୍ରା ସେ ଅଟଇ ॥
ବନ୍ଧ୍ୟ ବିଦ୍ୟା ଯେ ଯାହା କହ । ଉକାର ଅଂଶ ସେ ଅଟଇ । ୬୪ ।

୪୪-୧—ଆନ ହେଲ—ଖ, ଗ । ୪୫-୧—ରମାଦତ୍ତ ଯେ ଜ୍ଞାନାଦତ୍ତ—ଖ, ଗ । ୪୯-୧—ଜ୍ଞାନ୍ତାର ଗୁରୁ ସମର୍ପିଲେ—ଗ । ୫୧-୧—ବନ୍ଧ ନାହିଁ—କ । ୬୦-୧—ଓଁକାର—ଗ, ଉଁକାର—ଖ । ୬୪-୧—ବିନ୍ଦୁ—କ, ଖ ।

ହୃଛ ବୋଲିଣ ଯାହା କହି । ମକାର ଅଂଶ ସେ ଅଟଇ ॥
ମହତତ୍ତ୍ୱ ଯେ ଯାହା କହି । ପ୍ରଳମ୍ବ ଆଦ୍ୟ ଅଂଶ ସେହି ॥
ପ୍ରଳମ୍ବ ବୋଲି ଯାହା କହି । ଅକାର ଅଂଶ ସେ ଅଟଇ ॥
ଏମନ୍ତ ଆଦି ନାରାୟଣ । ଗୁରୁରୂପରେ ଛନ୍ତି ପୁଣ ॥
ସନକାଦି ଯେ ଯାହା କହି । ଏ ବ୍ରହ୍ମ ଅକ୍ଷର ଅଟଇ ॥
ଆବର ଅଂଶ ଯେତେ କହି । ସ୍ୱେ ଷଡ଼ଚକ୍ର ଯେ ଅଟଇ ॥
ଗୁରୁ ପୀଠ ଯେ ନାମମାନ । ଷୋଳ ଅକ୍ଷରେ ତାଙ୍କ ସ୍ଥାନ ॥
ଆବର ଦ୍ୱାଦଶ ଦଳରେ । ଛଡ଼ ଗୁରୁ ଯେ ଅଂଶ ଧରେ ॥
ଆବର ବେଦାକ୍ଷର କହି । ହଂସ କ୍ଷଁ ଯେ ହୁଛି ରହି ॥
ଅ ଆ ଠାବକୁ ଅଂ ଅଃ ଯାଏ । କ ଅ ଠାବକୁ ଠ ଅ ହୋଏ ॥
ଡ ଅ ଠାବକୁ ଫ ଅ ଗଣ । ବ ଲ ମିଳିଲେ ହୃଦ୍ର ପୁଣ ॥
ବ ଶ ରୁଦ୍ର ମିଶିଲେ ତହିଁ । ପଚାଶ ଅକ୍ଷର ବୋଲଇ ॥
ସ୍ୱେନ୍ତି ଗୁରୁ ଅଙ୍ଗ ଜାଣ । ଏଥିକୁ ନାମମାନେ ପୁଣ ॥
କେତେ ଗୁରୁ ଯେ ମାନେ ଗଲେ । ଯୁଗାଦି ସ୍ଥାନ ଭୋଗକଲେ ॥
ମହାଶୂନ୍ୟକୁ ଯେ ଗୃହିଣ । ସେ ଗୁରୁ ଲଭନ୍ତି ମରଣ ॥
ସେ ପୁଣ ନାତଗୃରେ ଜାତ । ପାପରେ ନୁହନ୍ତି ସଙ୍ଗତ । ୮୦ ।
ମହାଶୂନ୍ୟରେ ସଙ୍ଗ ଯହିଁ । ସେ ସଙ୍ଗ ଛେଦନ କରଇ ॥
ପାଷାଣ ନାବରେ ବସିଲେ । ବୁଡ଼ି ମରନ୍ତି ପ୍ରାଣୀ ଭଲେ ॥
ଅନ୍ଧକୁ ଅନ୍ଧ ନୁହେ ସଙ୍ଗ । ବଧିର ଜାଣେ କି ପ୍ରସଙ୍ଗ ॥
ଜଡ଼ କି ପ୍ରସଙ୍ଗ କହିବ । ସେ ଗୁରୁ ଏଥି ଅଙ୍ଗ ଭାବ ॥
ଯନ୍ତ୍ର ମନ୍ତ୍ର ଯେ ତନ୍ତ୍ର ପୁଣ । ଅଷ୍ଟ ପ୍ରହର ରସଗୁଣ । ୮୫ ।
ଜ୍ୟୋତି ଶୁଦ୍ଧ ଯେ ଅବଗାହି । ସମାଧି ମିଶି ଆଠ ହୋଇ ॥
ଏ ଅଷ୍ଟ ଗୁଣ ଯେ ଜାଣନ୍ତି । ତାହାକୁ ବୋଲି ଗୁରୁ ଶକ୍ତି ॥
ଥସ୍ୱେ ନ ଜାଣେ, କରେ ଶିଷ୍ୟ । ଗୁରୁ ଶିଷ୍ୟ ଯେ ଯାନ୍ତି ନାଶ ।୮୮।

୮୦—୨-ତାପରେ ନୁହନ୍ତି ସଙ୍ଗୀତ-କ
୮୪—ତାକ କି ପ୍ରସଙ୍ଗ କହିବ । ସେ ଗୁରୁ ଯହିଁ ଅଙ୍ଗଭାବ-କ ।
୮୮—ଏହା ନ ଜାଣି କରେ ଶିଷ୍ୟ—ଖ, ଗ ।

ଅତାପରେ ମନ୍ତ୍ର ପ୍ରାପ୍ତ ହୋଇ । ସେ ଗୁରୁ ଶିଷ୍ୟ ନାଶ ଯାଇ ।।
ଶିଷ୍ୟଙ୍କୁ ନାମ ଦେଲେ ପୁଣ । ବସିବ ପୂରୁବ ମୁଖେଣ ।।
ନିର୍ଗୁଣ ବାର ପୀଢ଼ ପୁଣ । କରିବ ଯତ୍ନେ ସୁମରଣ ।।
ଶିଷ୍ୟଙ୍କୁ ମନ୍ତ୍ରେ ଶୁଦ୍ଧ କରି । ଦୀକ୍ଷା ଜନ୍ମିବ କର୍ଣ୍ଣେ ଧରି ।।
ସୁବର୍ଣ୍ଣ ଲେଖନରେ ପୁଣ । ଅଣାକ୍ଷର ଜିହ୍ୱା ଲେଖିଣ ।।
ବେନ ବସନ ନବତନ । ପିନ୍ଧିବ ଶିଷ୍ୟ ସେ ଯତନ ।।
ଉତ୍ତମ ପେଣ୍ଡା ଯେ ପାଟ୍ରେଢ଼ା । ଗୁରୁ ଅଙ୍ଗରେ ଦେବ ବେଢ଼ା ।।
ଛେନା କଦଳୀ ଯେ ଶ୍ରୀଫଳ । ନବାତ ସର ଦଧି ଜଳ ।।
ଉଖୁଡ଼ା ଉଆ ଛଡ଼ା ଲିଆ । କନ୍ଦମୂଳ ଯେ ପାନ ଗୁଆ ।
ମିଠାଇ ଖଜା ଯେ ପାପଡ଼ । ସର ଫେଣି ଯେ ଚୁଡ଼ା ଗୁଡ଼ ।।
ନାମ ଦେଇଣ ଭୋଗ ଦେବ । ଶୁଭଯୋଗରେ ଯେ ମିଳିବ ।।
ବୈଶାଖ ଫଗୁଣ ମାସରେ । ଶ୍ରାବଣ ଭାଦ୍ରବ ମାସରେ । ୧୦୦ ।
ଶୁକ୍ଳ ପକ୍ଷରେ ସୁଦୃଷ୍ଟ । କୃଷ୍ଣ ପକ୍ଷରେ ପ୍ରୀତି ଅଂଶ ।।
ଗୁରୁ ଶୁକ୍ର ଯେ ସୋମବାରେ । ନାମ ଯେ ଦେବ ସେ ଯୋଗରେ ।।
ଗୋପାଳ କୁଳ ଉଦ୍ଧାରଣ । ମୁକୁନ୍ଦ ଅନନ୍ତ ଧ ଜଣ ।।
ଗୋପାଳ କୁଳ ଉଦ୍ଧାରଣ । କହିଲୁ ଗୁରୁ ଭକ୍ତମାନ ।।
ଗୋପ ବଂଶରେ ଯେତେ ଜନ । ଦାନ ଅନ୍ତ୍ୟନ୍ତ କଥା ଯେନ ।

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟଖଣ୍ଡେ ଶିଷ୍ୟ ଉଦ୍ଧାରଣ ଗୁରୁଶିଷ୍ୟ
ସମ୍ବାଦେ ନାମ ପ୍ରଥମ ପଟଳ ।

# ଦ୍ୱିତୀୟ ପଟଳ

ମହାନଦୀର ସେ ଉତ୍ତରେ । ଗ୍ରାମ ଷେଣଲେ ନାମ ଧରେ ॥
ବାରଟି ଗୋପାଳ ମଧ୍ୟରେ । ଅଚ୍ୟୁତ ମିଳି ସେ ଠାବରେ ॥
ରାମଚନ୍ଦ୍ରଙ୍କ ବାର ସଙ୍ଗ । ପାଞ୍ଚଶ ବୈଷ୍ଣବଙ୍କ ଅଙ୍ଗ ॥
ଗୁରୁଭକତ ଗୀତା ଲେଖି । ପଞ୍ଚାଶ ଜନ ହୋଇ ସୁଖୀ ॥
ଭୋଜନ ନିମନ୍ତ୍ରେ ବିସ୍ତର । ମୁକୁନ୍ଦ ପିତା ସେ ପଗୃଶ ॥
ବିଜୟ କର ସାଧୁଜନ । ନବଡ଼େ ବୋଷେଇ ବିଧାନ ॥
ଅଚ୍ୟୁତ ରାମଚନ୍ଦ୍ର ଦୁଇ । ମୁକୁନ୍ଦ ପିତାକୁ ସେ କହି ॥
ଅନ୍ନ ଯେ ଦେଲେ ଜପ ଫଳ । ଏ କଥା ଜାଣ ହେ ଗୋପାଳ ॥
ଭଗବାନ ଯେ ଗୋପ କହେ । ମୋ ଗୃହରେ କିବା କହି ହୋଏ ॥
ଅନନ୍ତ ପିତା ସାଦରଲେ । ଭୂମିରେ ପଡ଼ିଲେ ନଷ୍ଟଲେ । ୧୦ ।
ଏଥିର ଫଳ ଗୁରୁ କହ । ମନରୁ ଫିଟିବ ସନ୍ଦେହ ॥
ମୁକୁନ୍ଦ ଅନନ୍ତ ହେ ଦୁଇ । ତୁମ୍ଭର ପିତା ସା ପୁଚ୍ଛଇ ॥
କହିବା ସର୍ବ ଗୋପ ଶୁଣ । କହିଲେ ଯେତେ ଗୋପଗଣ ॥
ଗୃହଲ ଗୋହିକ ସେ ପୁଣ । ସୁନା ନଉତି ସୃଦାପଣ ॥
ସେବେର ଲେଖିଲେ ଯେତେ ହେବ । କେ ତାହା ଗଣିଣ ପାରିବ ॥
କୁଶର ଅଗ୍ରେ ବିନ୍ଦୁ ଯେତେ । ମୁକୁତା ଫଳ ହୋଏ ତେତେ ॥
ଦଧିର ଫଳ ସେ ମୁକୁତା । ଭୋଗ କରାଇ ସେହି ଦାତା ॥
ବାଟୁଳି ସମାନେ ସେ ଚିଅ । ଅଶ୍ର ଫଳର ସମ ଦିଅ ॥
ପତ୍ରର ଖଣ୍ଡି ନ ଯେ ପୁଣ । ରୂପାର ମୂଲ୍ୟ ତାକୁ ଜାଣ ॥
ମୁକୁତା ସର ଯେତେ ହୋଇ । ତୂଳର ଫଳ ତେତେ ହୋଇ ॥
ତମ୍ବାର ଅଗ୍ରୁଆ ପ୍ରମାଣେ । କାଳର ଫଳ ହୋଏ ତେତେଣେ ॥
ରୂପାର ନଉତି ଯେତେକ । ହାଣ୍ଡିର ଫଳ ସେତେ ତକ ॥
ଯେ ଭୂମି ଖଣ୍ଡିରେ ବସାଇ । ଅଷ୍ଟରତନ ଫଳ ସେହି ॥
ତହିଁ ବସାଇ ଅନ୍ନ ଦେଇ । ଏତେକ ଫଳ ସେ ଲଭଇ ॥
ସେ ଜନ ପୃଥ୍ୱୀ ମଧ୍ୟେ ଧନ୍ୟ । ଶୁଣ ଗୋପାଳ ଦୁଇଜଣ । ୨୫ ।

ଗ୍ରାମେ ଗୋପାଳ ଯେତେ ଥିଲେ । ସମସ୍ତେ ଦଣ୍ଡବତ କଲେ ॥
ଅନନ୍ତ ମୁକୁନ୍ଦ ଯେ ଶୁଣ । ସ୍ୱାମୁରେ ପଚାରୁଛୁ ପୁଣ ॥
ଦେଲ ଲୋକ ତ ଗତି ପାଇ । ଲୋକେତା କହୁପେ ତରଇ ॥
ଶୁଣ ହେ ମୁକୁନ୍ଦ ଅନନ୍ତ । କହିବା ତହିଁର ତଦନ୍ତ ॥
ଅଣଅକ୍ଷର ସୁମରିଲେ । ଅନ୍ନର ଦୋଷ ହରେ ଭଲେ । ୩୦ ।
ଏକା ଅକ୍ଷର ସୁମରିଲେ । ଦୁଧର ଦୋଷ ହରେ ଭଲେ ॥
ତାରକ ମନ୍ତ୍ର ସୁମରଣ । ଘୃତର ଦୋଷ ହରେ ପୁଣ ॥
ଶ୍ୟାମ ଯେ ପଞ୍ଚାକ୍ଷର ପୁଣି । ଲବଣ ଦୋଷ ହରେ ପୁଣି ॥
ଶୂନ୍ୟ ଭଜନ ମନ୍ତ୍ର ଧ୍ୟାଇ । ହାଣ୍ଡି କାଳ ଦୋଷ ହରଇ ॥
ହରେ ରାମ ଯେ ମନ୍ତ୍ର ପୁଣ । ପତ୍ରର ଦୋଷ ଯିବ ପୁଣ ॥
ପନ୍ନର ଜଳର ଯେ ଫଳ । ଦେଲେ ଲଭଇ ତେତେ ଫଳ ॥
ପଞ୍ଚଅକ୍ଷର ସୁମରିଲେ । ଭୂମିର ଦୋଷ ହରେ ଭଲେ ॥
ହରେକୃଷ୍ଣ ଯେ ମନ୍ତ୍ର ପୁଣି । ଜଳର ଦୋଷ ହରେ ପୁଣି ॥
ପନ୍ନର ଜଳର ଯେ ଫଳ । ଦେଲେ ଲଭଇ ତେତେ ଜଳ ॥
ଗୁଆର ଫଳ ଯେ ପ୍ରବାଳ । ଦେଲେ ଲଭଇ ତେତେ ଫଳ ॥
କୃଷ୍ଣ ମନ୍ତ୍ରକୁ ସୁମରିଲେ । ଗୁଆର ଦୋଷ ତେବେ ହରେ ॥
ପାନର ଫଳ ଯେତେ ହୋଇ । ଲୀଳା ଦେଖିଲେ ତେତେ ହୋଇ ॥
ରାଧିକା ମନ୍ତ୍ର ସୁମରିବେ । ତାମ୍ବୂଳ ଦୋଷ ଯେ ହରିବ ।
ଚୂନର ଫଳ ଯେତେ ଗୁଣ । ବାଞ୍ଛାଭୁଞ୍ଜିଛି ପରମାଣ ॥
କାମ ଗାୟତ୍ରୀ ସୁମରିବ । ଚୂନର ପାପ ଯେ ହରିବ ॥
ଖଇର ଫଳ ଏବେ ଶୁଣ । ସୁବର୍ଣ୍ଣ ଯେତେକ ତୁଳେଣ ॥
ନାରାୟଣ ଯେ ମନ୍ତ୍ର ପୁଣି । ଖଇର ଦୋଷ ହରେ ପୁଣି ॥
ବ୍ୟଞ୍ଜନ ଫଳ ଗୁଣ ଶୁଣ । ତମ୍ବା ଯେତେକ କୋଟି ପୁଣ ॥
ବ୍ରହ୍ମ ଗାୟତ୍ରୀକି ଭଜିଲେ । ଏଥିର ଦୋଷ ହରେ ଭଲେ ॥
ଡାଲିର ଫଳ ଗୁଣ ଶୁଣ । ପିତ୍ତଳ ଯେତେକ ତୁଳେଣ । ୪୦ ।
ଗାୟତ୍ରୀ ଛନ୍ଦକୁ ସୁମରି । ଭୋଗ ତା ଜନ ପାପ ହରଇ ॥

ଶାକର ଫଳ ଗୁଣ ଶୁଣ । କଂସାରି ଭୁଲେ ସେତେ ଜାଣ ॥
ଗୋପାଳ ମନ୍ତ୍ରକୁ ସୁମର । ଶାକର ଦୋଷମାନ ହର ॥
ସକଳ ମନ୍ତ୍ର ମାନ ଶୁଣ । ଇହା ଗୋଟିଏ ବୋଲି ଜାଣ ॥
ଭୋଜନ ଚକ୍ଷୁ ଯେ ଅଟଇ । ଭୁଞ୍ଜିଲେ ମନ୍ତ୍ର ଯେ ଫିଟଇ ॥
ବସି ଯେ ଅନ୍ନ ଦେଉଥାଇ । ବ୍ରାହ୍ମଣ ବୈଷ୍ଣବ ରଖାଇ ॥
କୁଟୁମ୍ବ ବନ୍ଧୁ ଯେ ବଦେଶୀ । ଯେ ଅନ୍ନଦାନ ଦିଏ ହସି ।
ଗଙ୍ଗା ଗୟା ଯେ ବାରାଣସୀ । ତା ହସ୍ତେ ସର୍ବ ତୀର୍ଥ ବସି ॥
ତିନିଗୋଟି ଯେ ଅଛି ତୀର୍ଥ । ଅଛନ୍ତି ତିନି ପୁରେ ମୋ ତ ॥
ସ୍ୱର୍ଗରେ ଛନ୍ତି ଦେଢ଼ ଗୋଟି । ମର୍ତ୍ତ୍ୟରେ ଅଛୁ ଏକ ଗୋଟି ॥
ପାତାଳେ ଗୋଟିଏ ଅଟଇ । ଏତେକ ତୀର୍ଥ ଫଳ ପାଇ ॥
ଏଣୁକି ଅନ୍ନ ଶରଧାରେ । ନ ଦିଅ ପ୍ରାଣୀ ସୁଚିତ୍ତରେ ॥
ସୁଚିତ୍ତେ ଅନ୍ନ ଯେବେ ଦେବ । ଏତେକ ଫଳ ସେ ଲଭିବ ॥
ସେ ଜନ୍ମ ମଲେ ପୁଣ ଯାଇ । ଗୋଲୋକ ପୁର ସେ ଲଭଇ ॥
ଶ୍ରୀରାଧା କୃଷ୍ଣର ସେବାରେ । ରହନ୍ତି ଗୋଲୋକ ଯେ ପୁରେ ॥
ବୈଷ୍ଣବ ଭୋଜନ କରଣ । ଏ ମନ୍ତ୍ରମାନ ସୁମରଣ ॥
ଦାତା ଲଭଇ ଅନ୍ନ ଫଳ । ଭୋକ୍ତା ପାପରୁ ନିର୍ମଳ ॥
ପର୍ବତ ପ୍ରାୟ ପାପ ତୂଳା । ଯେସନେ କରୁଥାଇ ଠୂଳା ॥
ମନ୍ତ୍ରର ବଳେ ପୋଡ଼ିଯାଇ । ଆପଣେ ତରଣ ତାରଇ ॥
ଶୁଣ ମୁକୁନ୍ଦ ହେ ଅନନ୍ତ । ପବନ ଉତ୍ଥାନ ଆଦିତ । ୭୦ ।
ବସ୍ତ୍ର ବାଳକ ହେ ଗୋବିନ୍ଦ । ସୁଦାମ ବୃନ୍ଦାବନ ଚନ୍ଦ ॥
ମଥୁରା ଯାଦବ ତୁମ୍ଭେ ତ । ଖୋଲ ନିର୍ମଳ ତୁମ୍ଭ ହସ୍ତ ।
ଏ ଧ୍ୟାନମାନଙ୍କରେ ପୁଣ । ସକଳ ପାପ ଯେ ହରଣ ॥
ଯେ ସ୍ଥାନେ ବଳଯ୍ୟ କରିବ । ଏତେକ ମନ୍ତ୍ର ସୁମରିବ ॥
ଦାତାକୁ ଏ ମନ୍ତ୍ରେ ଉଦ୍ଧାର । ଆପଣେ ପାପୁଁ ହେବ ପାର ॥
ଏ ଧ୍ୟାନ ପାନ କଲେ ପୁଣ । ସକଳ ପାପ ଯେ ହରଣ ॥
ଯେ ସ୍ଥାନେ କୀର୍ତ୍ତନ କରିବ । ଏତେକ ମନ୍ତ୍ର ସୁମରିବ । ୭୭ ।

୭୭—ଏତେକ ମନ୍ତ୍ର ନ ଜପିବ । ଆପଣା ପାପେ ଗ୍ରାସି ହେବ—ଖ

ଯେ ଅନ୍ନ ଦିଅନ୍ତି ଯେ ଦାନ । ଦେବେ କରନ୍ତି ତାଙ୍କୁ ମାନ୍ୟ
ଯେ ଅନ୍ନ ବସ୍ତ୍ର ଦେଉ ଥାଇ । ତା ପୁଣ୍ୟ ମୁଖେ କେହି କହି ॥
ଯେ କୋଟି ଗାବ ଦାନ ଦେଇ । ଅନ୍ନ ଦାନକୁ ସରି ନୋହି ॥
ଦୁଧରେ ପ୍ରାଣ ପୋଷା ହୋଇ । ଅନ୍ନକୁ ଦୁଧ ସମ ନୋହି ॥
ଶୁଣ ରେ ମୁକୁନ୍ଦର ବାପ । ଅନନ୍ତ ପୁଣ୍ୟ ତ ପ୍ରାପତ ॥
ତୁମ୍ଭର ଦୁଇ କନ ଘର । ଗୋରୁ ମଇଷି ତ ଅପାର ।
କୃଷି ତ ବହୁତ ଅଛଇ । ଦୁଜଣ ରାଜ ପାଇଁ ଦୁଇ ॥
ତୁମ୍ଭର ପୁତ୍ରମାନେ ପୁଣ । ତେଜିଲେ ଏହୁ ଧନ ଜନ ॥
ହରି ବଣିକ ସମ୍ଭାଳିଲେ । ସଂସାର ବଣିକ ତେଜିଲେ ॥
ଗୋପାଳ କୁଳ ଉଦ୍ଧାରିବ । ତୁମ୍ଭର ବଂଶକୁ ତାରିବ ॥
ଯେନ୍ତୁ କୁଳରେ ହୋନ୍ତି ଦାସ । ଉଦ୍ଧାର କୋଟି ଯେ ପୁରୁଷ ॥
କେତେ ବା ଗ୍ରାମ ଜନମାନେ । ଉଦ୍ଧାର କରିବେ ଏମାନେ ॥
ଗୋଲୋକ ଆୟୁଧ ଏ ବହି । ଭ୍ରମିବେ ସଂସାର ଏ ମହି ।
ଖୋଳ କରତାଳ ଧାସ ଚୂଳ । ବୀଣା ଖଞ୍ଜଣୀ ଯେ ମର୍ଦ୍ଦଳ ॥
ମୟୂର ମୁଠା ପଞ୍ଚା ଧାସ । ଯେ ଗୃହେ ରଖିଥାନ୍ତି ପାଶ ॥
ତା ଗୃହେ ଯମ ଯେ ଡରଇ । ଅକାଳମାନ ନ ପଶଇ ॥
କାଳ ଯେ ଭଜନ ପୁରେ ଥାଇ । କାଳର ସର୍ବନାଶ ଯାଇ ॥
କାଳରେ ବ୍ରହ୍ମା ବିଷ୍ଣୁ ଦେବ । ଯେ ଅବା ତାର ଯୁଗ ଛବ ॥
ଅବଶ୍ୟ କାଳେ ନାଶ ଯାଇ । କେବଳ କଥା ମାନ ଥାଇ ॥
ଏ ବେନି ପୁତ୍ରଙ୍କର ପୁଣ । କୀର୍ତ୍ତି କଥା ବଡ଼ ଜାଣ ॥
ଗୋପାଳ କୁଳେ ଏ ମହାନ୍ତ । ଅଉ ଯେତେକ ହେବେ ଭୃତ୍ୟ ॥
ପୁଣୁ ତ ଅଚ୍ୟୁତ ଅନନ୍ତ । ଅଧିକାଙ୍କ ଯେ ଗ୍ରାମ ଏ ତ ॥
ମହାନ୍ତ ଏହି ବାରଜଣ । ସକଳ ଦେଶେ ଏ ପ୍ରମାଣ ।
ଅଙ୍ଗାରଠାରୁ ଯେ ନୋହିଲା । ଆମ୍ଭର ପୁଣୁ ଯଶ ହେଲା ॥
ଏଥିରେ ଗ୍ରାମ ଅଧିକାରୀ । ଗୋପାଳେ ଆମ୍ଭଙ୍କୁ ଯେ ବଡ଼ ॥
ଏମାନେ ଖୋଳ କରତାଳେ । ଭ୍ରମି ଯେ ପୃଥିବୀ ମଣ୍ଡଳେ ॥
ଧନ ସଣକୁ ଆଶା ନାହିଁ । ପିତା ମାତାଙ୍କୁ ସ୍ନେହ ନାହିଁ ॥

---

୧୦୦-୨—ଭ୍ରମଣ—ଗ, ଙ ।

ପୁରୁଷୋତ୍ତମ ସେତୁ ବନ୍ଧ । ବଦରି ବୃନ୍ଦାବନ କନ୍ଦ ॥
ନନ୍ଦଆ ସମଲଗଡ଼ରେ । ଭ୍ରମିଲେ ଅନେକ ଦୁଃଖରେ ॥
ଅନନ୍ତପୁର ଯାଜ ଦେଶେ । ଅନେକ ବୁଲି ପରବାସେ ॥
ଏବେ ମିଳଲେ ଆମ୍ଭଠାରେ । ଗୁରୁ ପରମ ଗୁରୁ ଘରେ ॥
ଉତ୍ଥାନ ପବନ ମଥୁରା । ମଧୁ ମାଧୁରି କରନ୍ତା । ୧୦୯ ।
ଯେ ଛଅ ନପୁଂସକ ଦେହ । ଯେ ଗଣ ବୈରାଗ ସେନେହ ॥
ମୁକୁନ୍ଦ ବାଳକ ଅନନ୍ତ । ଯାଦବ ବସ୍ତ୍ର ଆନନ୍ଦ ତ ॥
ଯେ ଛଅ ସଂସାର ଅବୋଧ । ଯେ ଅଂଶେ ରହିବେ ସଂସାରୀ ॥
ଯେ ଅଂଶେ ଗୋପାଳେ ତରିବେ । ଖୋଳ ଯେ କର୍ତ୍ତାଳ ଶିଖିବେ ॥
ଯେତେକ ମନ୍ତ୍ର ଏ ସଙ୍ଗରେ । ଘୋଷଣ କରିବେ ମୁଖରେ ॥
ଦକ୍ଷିଣ ପଶ୍ଚିମ ଗୋପାଳ । ମୁକୁନ୍ଦ ଅଂଶରେ ଏ ମେଳ ॥
ପୂର୍ବ ଉତ୍ତରେ ଗୋପ ସୁତ । ଅନନ୍ତ ଅଂଶେ ଏ ଭକତ ॥
ଆନନ୍ଦ ଗୋବିନ୍ଦ ପବନ । ଉତ୍ଥାନ ମଧୁ ପଞ୍ଚଜନ ॥
ମୁକୁନ୍ଦ ମିଶି ଛଅ ଭାଇ । ଏ ଗଡ଼ ଜନ୍ମନ୍ତି କୁଳାଇ ॥
ଅନନ୍ତ ଯାଦବ ବାଳକ । ମଥୁରା ବୃନ୍ଦାବନ ଜନ ॥
ଏ ଛଅ ଅନନ୍ତର ଭାଇ । ମାତ୍ରସୀ ପିତ୍ରସୀ ଲୋଖାଇ । ୧୨୦ ।
ଏ ପଞ୍ଚ ଯୁଗରେ ଅମର । ଜନ୍ମେ ଜନ୍ମେ ସେ ଜାତେ ସାର ॥
ଅନନ୍ତ ଯୁଗରେ ଏ ପୁଣ । ରହିଲେ ଅନନ୍ତ ସଙ୍ଗେଣ ॥
ସତ୍ୟରେ ନାରାୟଣ ମିଶି । ରହିଲେ ପୁଣ ହୋଇ ଋଷି ॥
ତ୍ରେତାରେ ବାନର ହୋଇଲେ । ଶ୍ରୀରାମ ସଙ୍ଗେ ଲୀଳା କଲେ ॥
ଦ୍ୱାପର ଗୋପରେ ଗୋପାଳ । ହୋଇଣ ରାମକୃଷ୍ଣ ମେଳ ॥
ଓଡ଼ ରାଷ୍ଟ୍ରରେ ଜାତ ହୋଇ । ଚୈତନ୍ୟ ରୂପକୁ ସେ ଧ୍ୟାଇ ॥
ବଉଦ ରୂପକୁ ଅବୋଧ । ଏ ଖୋଳ କରତାଳ ଧରି ॥
ହୁଙ୍କାର କରିବା କମନ୍ତ୍ରେ । ଆମ୍ଭେ ସେ କଲେ ଜଗଭୂତେ ॥
ଚୈତନ୍ୟ ପ୍ରଭୁ ନୀଳାଚଳେ । ରହିଲେ ଚୈତନ୍ୟ ମଣ୍ଡଳେ ॥
ଆବର ସେ କଲେ କରୁଣା । ଓଡ଼ ରାଷ୍ଟ୍ରରେ ବଡ଼ ଜଣା ॥

ବହୁତ କଲେ ପରଶଂସା । ଧନ୍ୟ ତୁମ୍ଭର ଗୋପ ଅଂଶା ॥
ସେ ଖୋଲ କରତାଳ ଦେଇ । ଅନ୍ତର ହୋଇଲେ ଗୋସାଇଁ ॥
ଭଜନ କୁଟୀରେ ବସିଲେ । ଏ ପୁଟେ ଗୃହକୁ ଆଇଲେ ॥
ଗୋପ ସୁତଙ୍କୁ ଏତେ କହୁ । ଭୋଜନ କଲେ ପଞ୍ଚସାଇଁ ॥
ଯେତେ ଗୋପାଳେ ସଙ୍ଗେ ଥିଲେ । ସମସ୍ତେ ଭୋଜନ ଯେ କଲେ ॥
ବୈଶାଖ ଦ୍ୱିତୀୟାର ଦିନ । ମୁକୁନ୍ଦ ଉତ୍ସବ ଭୋଜନ ॥
ଅତ୍ୟନ୍ତ ପରୁଷିଲେ ଯେତେ । ସନ୍ତୋଷ ହୋଇଲେ ସମସ୍ତେ ॥
ତୁମ୍ଭେ ଯେ ବୃଝ କରୁଥିବ । ଅତଥି ଆଇଲେ ପୂଜିବ ॥
ଇତିହାସରେ ପରମାଣ । ରାମାୟଣ ଭାଗବତେଣ ॥
ବେଦରେ ପରମାଣ ଜାଣ । ଅନ୍ନକୁ ନାହିଁ ବଡ଼ ଜଣ । ୧୪୦ ।
ଆଗରେ କ୍ଷୀର ଅନ୍ନ ଥୋଇ । ଜୀବକୁ ଦେହରେ ବାନ୍ଧଇ ॥
ଅନନ୍ତ ଯୁଗରେ ଅନନ୍ତ । କ୍ଷୀର ରଖିଣ ଦେହବନ୍ତ ॥
ସତ୍ୟ ଯୁଗରେ ମୁନିମାନେ । ପୁଷ୍ଟ ସାଗରେ ବଞ୍ଚି ଦିନେ ॥
ତ୍ରେତୟା ଯୁଗେ ରଘୁନାଥ । ଫଳ ମୂଳରେ ବଞ୍ଚିଲେ ତ ॥
ଦ୍ୱାପରେ ଅମୃତ କ୍ଷୀରରେ । ବଞ୍ଚିଲେ ଗୋପପୁର ନରେ ॥
କଳିରେ ଅନ୍ନ କ୍ଷୀର ସାର । ମିଳଇ ପୁପୁଣ୍ୟ ଯେ ନର ॥
ଆପଣେ ଭକ୍ଷି ଭକ୍ଷାଇବ । ଯମ ପାଞ୍ଜିରେ ଲେଖା ହେବ ॥
ଅନ୍ତଥି ହିସାବ କରଇ । ପୋତଣ ବନ୍ଧ ରଖିଥାଇ ॥
ମୂର୍ଖ ପଶୁ ଯେ ଦାସ ନରେ । ରଖିଣ ଥାଇ ଯେଉଁ ଘରେ ॥
ଅଗ୍ନି ଯେ ପୂର୍ଣ୍ଣ ରାଜାଠାରେ । ଦୁର୍ଭିକ୍ଷ ନିର୍ବପାନରେ ॥
ଅବଶ୍ୟ ଧନ ନାଶ ଯାଇ । ଧର୍ମ ପଥ ତ ଛାଡ଼ି ଯାଇ ॥
ଗଲେଣ ଯମର ତଗରେ । କୃପଣ ଲୋକଙ୍କ ଉପରେ ॥
ନରକେ ନିରନ୍ତ ଯେ ବାସ । ଅନେକ କଡ଼ନ୍ତି ଜୀଂଘାସ ॥
ମନ୍ତ୍ର ମଣ୍ଡଳେ ଜାତ ହୋଇ । ମଧୁରେ ଦୟା କଲେ ନାହିଁ ॥
ନାସିକା ପଥେ ନାମ ଧୂନି । ଜପ ନ କଲୁ ତୁ ଯେ ବାଇ ॥
ନୟନେ ରୂପ ନ ଦେଖିଲୁ । ଶ୍ରବଣେ ଗୁଣ ନା ଶୁଣିଲୁ ॥

ମନ୍ତ୍ର ନ ଜପିଲୁ ମୁଖରେ । ନାମ ନ ଧରିଲୁ ମନରେ ॥
ସ୍ୱାର୍ଥେ ଜୀବନ ହାରିଲୁ । ଧନ ମୋହରେ ଜଡ଼ିଥିଲୁ ॥
ଧନ ଜନ ଏ ପଣମାନ । ଗୋବିନ୍ଦ କୋଠ ବୋଲି ଜାଣ ॥
ଦେହୁ ଯେ ଥାନ୍ତି ନାଶ ଯାନ୍ତି । ଥିଲା ବେଳରେ ସେ ହାଥନ୍ତି ॥
ସେ ପୁଣି ହାଥନ୍ତି ସଂସାର । ଅଚ୍ୟୁତ କହେ ଏହୁ ସାର । ୧୨୧ ।

ଇତି ଶ୍ରୀ ଗୁରୁଭକ୍ତି ଗୀତା ଚତୁର୍ଥଖଣ୍ଡେ ଅନୁପମ
କଥନେ ନାମ ଦ୍ୱିତୀୟ ପଟଳ ।

---

## ତୃତୀୟ ପଟଳ

ମୁକୁନ୍ଦ ଅନନ୍ତ ଗୋପାଳ । ନମସ୍ତେ ଗୁରୁ ପାଦତଳ ॥
ମନ୍ତ୍ରମାନଙ୍କ ବୀଜ କନ୍ଦ । ଆମ୍ଭର ଫିଟିବ ସନ୍ଦେହ ॥
ଶୁଣ ସୁବୁଦ୍ଧି ଗୋପ ସୁତ । ମୁକୁନ୍ଦ ଉଚ୍ଚାରେ ଅନନ୍ତ ॥
ଯାଦବ ପବନ ବାଳକ । ମଧୁର ବାସ୍ତ ଆନନ୍ଦକ ॥
ଗୋପକୁଳର ହେ ମହନ୍ତ । ପଞ୍ଚୁତ ପାର ଯନ୍ତ୍ର ମନ୍ତ୍ର ॥
ଯନ୍ତ୍ରରେ ମନ୍ତ୍ର ରୂହିଲେଣ । ମନ୍ତ୍ରକୁ ଚନ୍ଦ୍ରରେ ଭେଦାଣ ॥
ତେବେ ଶିଷ୍ୟର ନିଜ ବୋଧ । ଯେ ଗୁରୁ ଜାଣେ ତତ୍ତ୍ୱବୋଧ ॥
ବୋଧ ଗୁରୁ ଯେବେ ମିଳଇ । ଶିଷ୍ୟ ଯେ ତେବେ ବୋଧ ପାଇ ॥
ନଧନେ ନଧନେ ସଙ୍ଘାତ । ମୂର୍ଖ ମୂରୁଖ ଶାସ୍ତ୍ରମତ ॥
ଜଡ଼କୁ ଜଡ଼ ଯେହ୍ନେ ଯୋଗ । ଅନ୍ଧେ ଅନ୍ଧେଣ ପଞ୍ଚ ମିଶା ॥
ଯନ୍ତ୍ର ମନ୍ତ୍ର ଯେ ତନ୍ତ୍ର ଭେଦ । ଅଷ୍ଟପ୍ରହରର ରସ ବନ୍ଧ । ୧୧ ।
ଛାୟା ଅବାଡ଼ ଜ୍ୟୋତି ଧ୍ୟାନ । ସମାଧି ଲକ୍ଷେ ଅଷ୍ଟ ଘେନ ॥
ଏ ଅଷ୍ଟରସ ନ ଜାଣିଲେ । ଶିଷ୍ୟ ନ ତରଇ ସେ ଭଲେ ॥
ଏ ଅଷ୍ଟରସ ନ ଜାଣିଣ । ଶିଷ୍ୟ କରଇ ମୁଁ କାରେଣ ॥

ଗୁରୁ ଶିଷ୍ୟ ଯେ ନଦୀ ଜଳେ । ବସନ୍ତି ପାଷାଣ ଯେ ସ୍ଥଳେ ॥
କେବଳ ଅନ୍ନ ବସ୍ତ୍ର ଖାଇ । ଶିଷ୍ୟର ଗୁରୁହେ ଭୁଲୁଥାଇ ॥
ଅନ୍ତାମ ନର୍ମ ପ୍ରାପ୍ୟେ ଶିଷ୍ୟ । ସେ ଶିଷ୍ୟ ଜନ୍ମ ହୁଏ ନାଶ ॥
ଏଣୁ ଏ ଅଷ୍ଟଗୁଣ ଘୋଷ । ଉତ୍ତମ ଗୁରୁ ପାଦେ ରସ ॥
ଅନ୍ନ ବସନ ଅଷ୍ଟରତ୍ନ । ଗୁରୁଙ୍କଠାବେ ଦେବ ଯତ୍ନ ॥
ଅମାବସ୍ୟା ସଙ୍କ୍ରାନ୍ତି ତିଥି । ପୌର୍ଣ୍ଣମୀ ଏକାଦଶୀ ତିଥି । ୨୦ ।

ଏ ଦିନମାନଙ୍କରେ ପୁଣ । ଗୁରୁ ଭକ୍ତନ୍ତି ଯା ଗୁରେଣ ॥
ଏ ତିଥିମାନଙ୍କେ ବୈଷ୍ଣବ । ଅଥବା ବ୍ରାହ୍ମଣେ ପୂଜିବ ॥
କିମ୍ବା ଜନ୍ମବା ତାର ଗତ । ଶ୍ରଦ୍ଧାଯେ ଅତିଥି ପୂଜନ୍ତି ॥
ଏ ତନ୍ତ୍ର ମୁଖ୍ୟଙ୍କୁ ବଚନ । ଶୁଣିବ ପୁଣ୍ୟ କଥାମାନ ॥
ଗୁରୁଙ୍କ ପୂଜା ଯଦି କରି । କୃଷ୍ଣଙ୍କ ପୂଜା ଶ୍ରେଷ୍ଠ ସତ ॥
ବୈଷ୍ଣବ ଭୋଜନ ପୂଜାର । ମହେଶ ପୂଜାରୁ ଏ ସାର ॥
ବ୍ରାହ୍ମଣ ପୂଜା ଯେ କରଇ । ବ୍ରହ୍ମପୂଜାରୁ ଶ୍ରେଷ୍ଠ ହୋଇ ॥
ଶୁଣ ହେ ଗୋପପୁତ୍ରମାନେ । ମନ୍ତ୍ର ବସଇ ଯେତେ ସ୍ଥାନେ ॥
ଯନ୍ତ୍ର ମନ୍ତ୍ରର ସ୍ଥାନ ଚିନ୍ତ । ଗୁରୁ ବଚନ ମନେ ଘେନ ॥
ଅକାର ଅଣାକ୍ଷର ମୂଳ । ଉକାର ଏକାକ୍ଷର ସ୍ଥଳ । ୩୦ ।
ଅକାର ଶ୍ୟାମ ପଞ୍ଚାକ୍ଷର । ଅର୍ଦ୍ଧାଙ୍ଗ ତାରକ ମନ୍ତ୍ରର ॥
ଅକାର ହରେ ରାମ ମନ୍ତ୍ର । ଏରୂପେ ବସିଲି ଯେ ଯନ୍ତ୍ର ॥
ଏଥିରେ ପଞ୍ଚ ମାତ୍ରା ଦେବ । ସମନ୍ତ୍ର ନାମ ଉଚ୍ଚାରିବ ॥
ଯାହା ଜାଣିଲେ ଜନ୍ମ ମିଶେ । ସ୍ଥାବର ଆଦି ଗୁରୁ ଅଂଶେ ॥
ସ୍ୱର୍ଗ ମଞ୍ଚ ଯେ ପାତାଳରେ । ଯେତେକ ନାମ ଏ ସଂସାରେ ॥
ଏ ପଞ୍ଚ ମନ୍ତ୍ରେଣ ମିଶିବ । ଏ ପଞ୍ଚ ମନ୍ତ୍ରଙ୍କ ଦୁର୍ଲଭ ॥
ଅଣ ଅକ୍ଷର ଏକାକ୍ଷର । ତାରକ ଶ୍ୟାମ ପଞ୍ଚାକ୍ଷର ॥
ହରେ ରାମ ଯେ ମନ୍ତ୍ର ପଞ୍ଚ । ଏ ମନ୍ତ୍ରମାନଙ୍କରେ ଉଚ୍ଚ ॥
ଅଣ ଅକ୍ଷର ମୂଳ ହୋଇ । ଏକା ଅକ୍ଷର ଅଙ୍କୁରଇ ॥
ଶ୍ୟାମ ଯେ ପଞ୍ଚାକ୍ଷର ଡାଳ । ତାରକ ମନ୍ତ୍ରମାନେ ଫଳ ॥

ଦରେ ଶ୍ରମ ଯେ ଫଳ ହୋଇ । ଏ ବୃକ୍ଷ ଯେ ନନ ଚହ୍ନାଇ ॥
ସେହୁ ଜନକୁ ବୋଲି ଦାସ । ବନ୍ଧନ ସେହୁ ଯେ ମନୁଷ ॥
ଏହାକୁ ବଇଷ୍ଣବ କହୁ । ଏ ଜନ ବୈରାଗ୍ୟ ଅଟଇ ॥
ଏହା ଜାଣନ୍ତି ଯେଉଁ ନର । ମହନ୍ତ କୁଳରେ ସେ ସାର ॥
ଜାଣିଲେ ସନ୍ଥ ସାଧୁ ବୋଲି । ସୁଜନ ସଙ୍ଗରେ ଏ ସତ ॥
ମହନ୍ତ ଜନ ସେ ଅଟନ୍ତି । ଏହା ନ ଜାଣି ଦାସ ହୋନ୍ତି ॥
ଧାନରେ ଅଗାଡ଼ି ଯେସନ । ଗାବରେ ବାଞ୍ଝା ଗାବମାନ ॥
ମନୁଷ୍ୟେ କପୁତ୍ରିକ ଅଂଶ । ଜନରେ ଦରିଦ୍ର ମନୁଷ୍ୟ ॥
ନଷ୍ଟଲେ ଜନ୍ମ ତାର ଯାଇ । ଯେ ତତ୍ତ୍ୱ ଗୁରୁ ନ ସେବଇ ॥
ଶ୍ରୀ ଭାଗବତେ ଏ ପ୍ରମାଣ । ଶ୍ରୀ ଭଗବତ ଗୀତା ଜାଣ ॥ ୫୦ ।
ଜ୍ଞାନୀ ସେବଲେ ଜ୍ଞାନ ପାଇ । ଭଗନ୍ତ ଜ୍ଞାନ ଦ୍ୟନ୍ତି କହି ॥
ଉତ୍ତମ ଗୁରୁ ପାଦେ ସେବା । ଭଗତ ପଥ ବତାଇବା ॥
ବେଦରେ ଏ କଥା ପ୍ରମାଣ । ଯେ କର୍ମ କରେ ସେ ଫଳେଣ ॥
ଯେ ବୀଜ ଯେ ପୁଣ ବୁଣଇ । ସେହୁ ବୀଜ ଯେ ପୁଣ ଜାଇଁ ॥
ଏଣୁ ସୁବୀଜ ଗୁରୁ ଖୋଜ । ଅଗାଡ଼ି ଧାନେ କିସ କାର୍ଯ୍ୟ ॥
ଗୁରୁଙ୍କି ଗଢର ପୁରୁଷ । ଗୁରୁ କଲ୍ୟାଣେ ଧନ ବଂଶ ॥
ଗୁରୁ କଲ୍ୟାଣେ ରାଜ୍ୟ ଶିଷ୍ୟ । ଗୁରୁ ଦର୍ଶନେ ପାପ ହରେ ॥
ଗୁରୁଙ୍କି କିସ ଦେବା ତୁଲ୍ୟ । କୃଷ୍ଣର ପରେ ଗୁରୁ ଭଲ ॥
ଆଉ କି ଦ୍ରବ୍ୟ ସଂସାରରେ । ତୁଲ୍ୟ ଅଛଇ ତ୍ରିଜପୁରେ ॥
ଜ୍ୟୋତିଜ ଗୁରୁ ବୋଲି ଜାଣ । କୃଷ୍ଣର ଏଥି ଲସ୍ୱ ପୁଣ । ୬୦ ।
ଗୁରୁ ଦେଖାନ୍ତି ଜ୍ୟୋତି ସ୍ଥାନ । ଜ୍ୟୋତିରୁ କେତେ ରୂପମାନ ॥
ସେ ଅଂଶୁ ଜନମ ହୁଅନ୍ତି । ସେ କଥା ଚିହ୍ନି ନ ପାରନ୍ତି ॥
ଯେବେ ସେ ତତ୍ତ୍ୱ ଗୁରୁ ପାଇ । ସେ ସ୍ଥାନ ଦିଅନ୍ତି ଚହ୍ନାଇ ॥
ଯେ ଗୁରୁ ସେ ସ୍ଥାନ ଚହ୍ନାଇ । ତାହାଙ୍କୁ ତତ୍ତ୍ୱ ଗୁରୁ କହି ॥
ଏ ପଞ୍ଚ ମନ୍ତ୍ର ଯେ ଜାଣଇ । ଏହାକୁ ସଦଗୁରୁ କହି ॥
ଏହା ଖୋଜିଣ ହେବ ଶିଷ୍ୟ । ଫିଟିବ ଭବ ବନ୍ଧ ଫାଶ ॥

ମତିବ କୌପୀନ ଲଗ୍ନ କରି । ଭବ ସଂସାରୁ ଯିବ ତରି ॥
ଭବ ସାଗରେ କୌପୀନ ନାବ । ମନ୍ତ୍ର ଯେ କେରୁଆଳ ଭାବ ॥
ଧୀବର କୌପୀନ ମଧ୍ୟେ ରୂପ । ସମାଧି ଲଙ୍ଗର ସ୍ୱରୂପ ॥
ଶ୍ରଦ୍ଧା ଯେ ପଟା ବୋଲି ଜାଣ । ଅବାଡ଼ ପାଣିଛିଦ୍ରା ଜନ୍ତୁ ॥
ରସ ଗୁଣ ଯେ କଣ୍ଟା ହୋଇ । ତନ୍ତ୍ର ଯେ ପଟା ଖମ୍ବ କହି ॥
ଯନ୍ତ୍ର ଯେ ନାବରେ ସମିଧ । ଭକ୍ତି ନାବ ଯେ ଅଷ୍ଟବନ୍ଧ ॥
ଏ ନାବ ଖୋଜି ଭବୁଁ ତର । ଭବରେ ବୁଡ଼ିଣ ନମର ॥
ବହୁତ ଜନ୍ମ ଭାଗ୍ୟ ଥାଇ । ଏ ଗୁରୁ ତାହାକୁ ମିଳଇ ॥
ସହସ୍ର ଗ୍ରାମେ ସମ୍ପ ଦେଶେ । ଥାନ୍ତି ସେ ଏକା ବା ପୁରୁଷେ ॥
ଦ୍ୱନ୍ଦୀ ଛନ୍ଦୀ ଯେ ବାପ ଜନ । ଭେଖ ବହିଣ ଦାସମାନ ॥
ପଢେ ଅଧେ ବା ଶିକ୍ଷା କରି । ଗୁରୁ ହୁଅନ୍ତି ବର୍ଣ୍ଣେ ଧରି ॥
ସଂସାରେ ବହୁତ ଯେ ଅଂଶ । ଏଥିରେ ପ୍ରୟୋଜନ କିସ ॥
ନାବରେ ବସାଇ କୂଳରେ । ଲଗାଇ ନ ପାରେ ଧୀବରେ ॥
ଧୀବର ଜନ ନଦୀ ମଧ୍ୟେ । ବୁଡ଼ନ୍ତି ମରନ୍ତି ଜଳ ମଧ୍ୟେ । ୮୦ ।
ତୁମ୍ଭେ ଯେ ଭାଗ୍ୟ କରିଥିଲ । ତେଣୁ ଗୁରୁଙ୍କୁ ଯେ ଭେଟିଲ ॥
ରାମ ବରଜ ଦାସ ମୋର । ସେବିଲ ଆମ୍ଭର ସଦ୍ଗୁର ॥
ଦାରା ପୁତ୍ର ଯେ ଧନ ପୁଣ । ତେଜିଣ ରହିଲ ପାଦେଣ ॥
ତୁମ୍ଭେ ତାହାଙ୍କୁ ସେବା କଲ । ପରମ ଗୁରୁଙ୍କୁ ଭେଟିଲ ॥
ଏ ଗ୍ରନ୍ଥ ତୁମ୍ଭର ଭାଗ୍ୟକୁ । ଲେଖିଲି କୃଷ୍ଣ କରୁଣାରୁ ॥
ତୁମ୍ଭେ ଶୁଣିଲ ଗାଢ଼ ହେଲ । ତୁମ୍ଭର ଅଂଶେ ଥିବେ ଭଲ ॥
ଏକ ଏକ ବା ଶ୍ରଦ୍ଧା କରି । ଭବ ସଂସାରୁ ଯିବେ ତରି ॥
ଯେ ପର ସ୍ତ୍ରୀ ଗମନ କରିବ । ଏ ଗ୍ରନ୍ଥ ତାକୁ ନ କହିବ ॥
ଯେ ମଦ୍ୟ ଧୂଆଁ ଯେ ଖାଇବ । ଏ ପାଠ ତାକୁ ନ କହିବ ॥
ଗଞ୍ଜା ବଦରଙ୍ଗୀ ଖାଇ । ଅସୁଆ ଯେ ଜନ ଭୁଲାଇ । ୯୦ ।

ଏ ଶାସ୍ତ୍ର ନ, କହିବ ତାରେ । କହିଲେ ବିପତ୍ତି ଯେ ପଡ଼େ ॥
ଯାହାର ଶ୍ରଦ୍ଧା ଚିତ୍ତ ହେବ । ସତନେ ତାକୁ ଶୁଣାଇବ ॥
ଶ୍ରୀକୃଷ୍ଣ ଅଙ୍କରେ ବଚନ । ଦୀନ ଅଚ୍ୟୁତ କଥା ଯେନ । ୧୩ ।

ଇତି ଶ୍ରୀ ଗୁରୁଭକ୍ତଗୀତା ତୃତୀୟଖଣ୍ଡେ ଶିଷ୍ୟ ଗୁରୁ
ପରମ ଗୁରୁ ସମ୍ବାଦେ ନାମ ତୃତୀୟ ପଟଳ ।

---

## ଚତୁର୍ଥ ପଟଳ

ଅନନ୍ତ ମୁକୁନ୍ଦର ବାଣୀ । ଶୁଣିବା ଗୁରୁ ଦେବ ପୁଣି ॥
ସଂସାର ଅଟେ ବନ୍ଧନ୍ଧନ । ପ୍ରାଣୀ ହୁଅନ୍ତି ରଣଭଣ ॥
ଜନମ ହୋଇ ବଡ଼ ଦୁଃଖ । କେବେହେଁ ନାହିଁ ତାଙ୍କ ସୁଖ ॥
ରାଜ ଅଂଶରେ ଜାତ ହୋଇ । ମରଣେ ଶତ୍ରୁକୁ ଡରଇ ॥
ସାଧୁକୁଳେ ଜାତ ହେଲେ । ଧନକୁ ରାଜଭୟ ଭଲେ ॥
ଗ୍ରାମିକ କୁଳେ ଜାତହୋଇ । ମାତ୍ର ପ୍ରଷ୍ଟକୁ ଦୁଃଖ ସହି ॥
ଦୁଃଖର ଗର୍ଭେ ହେଲେ ଜାତ । ପେଟର ନିମନ୍ତେ ଦୁଃଖିତ ॥
ସ୍ତ୍ରୀ ଜନ୍ମରେ ଜାତ ହେଲେ । ଗର୍ଭ କଷ୍ଟରେ ଥରହରେ ॥
ସଂସାରେ ସୁଖୀ ଯେହ୍ନ ନର । ଶ୍ରୀମୁଖେ ଆଜ୍ଞା ତୁମ୍ଭେ କର ॥
ଶୁଣ ହେ ରାମାସର ଦାସ । ରହସ୍ୟ ପୁଚ୍ଛନା ତ ଶିଷ୍ୟ । ୧୦ ।
ସୁଖେ ତରିବ ଏହୁ ମହ । ମନେ ବିଗୁରୁ ଅଛ ରହ ।
ଦେହ ବହିଲେ ଦୁଃଖୀ ସୁଖୀ । ପ୍ରାଣୀମାନଙ୍କୁ ଧାତା ଲେଖି ॥
କେବଳ ସାଧୁ ସଙ୍ଗ କଲେ । ଦୁଃଖ ନ ପୀଡ଼େ ଅଙ୍ଗେ ଭଲେ ॥
ସାଧୁସଙ୍ଗମ କେଉଁ ରୂପେ । ଏ କଥା କହିବା ସ୍ୱରୂପେ ॥
ଆମ୍ଭର ସାଧୁସଙ୍ଗ ନାହିଁ । ଅମ୍ଭେ ଜାଣିରୁ ଅବା କାହିଁ ॥
ଶୁଣ ହେ ମୁକୁନ୍ଦ ଅନନ୍ତ । ଗୋବିନ୍ଦ ତୁମ୍ଭେ ଆନନ୍ଦ ତ ॥
ବୈରାଗ୍ୟମାନେ ସେ ଧରଇ । ଯେ ଜନ ଆତ୍ମା ସୁଖ ପାଇ ॥

ବୈରାଗ୍ୟ ପଥ ଯେ କେମନ୍ତ । ଏ କଥା କହିବା ଆମ୍ଭେ ତ ॥
ଶୁଣ ହୋ ବାରଦ୍ଦିଆ ପୋଏ । ବୈରାଗ୍ୟ ମନୁଷ୍ୟ ଯେ ହୋଇଯେ ॥
ବୈରାଗ୍ୟ ଗୁଣ ପରକାର । ମନୁଷ୍ୟ ମଧ୍ୟେ ସେ ତ ସାର ।୬୦॥
ସତାନ୍ଦ୍ ବୈରାଗୀ ଏ କହି । ସଯୋଗୀ ବୈରାଗୀ ଯେ ଦୁଇ ॥
ଊର୍ଦ୍ଧ୍ୱବାହୁ ବୈରାଗୀ ଜନ । ମନ ବୈରାଗୀ ଗୃହେ ଯେନ ॥
ଏ ଗୁଣ ପଥେ ଯେ ଗମନ୍ତି । ତାହାଙ୍କୁ ନାହିଁ ଦୁଃଖ ଭ୍ରାନ୍ତି ॥
ଶୀତ ଲାଗିଲେ ଅଗ୍ନି ତରେ । ଶୀତ ପଳାଇ ଯେ ହୃଦରେ ॥
କ୍ଷୁଧାରେ ଅନ୍ନକୁ ଭକ୍ଷିଲେ । କ୍ଷୁଧା ପଳାଇ ଯେସନ୍ଥେ ଭଲେ ॥
ଏଣୁ ବୈରାଗ୍ୟ ପଥ ସାର । କରନ୍ତି ସୁପୁରୁଷ ନର ॥
ନବୁର୍ଦ୍ଧି କୁପୁରୁଷମାନେ । ବୈରାଗ୍ୟ ନ ଧେନନ୍ତି ମନେ ॥
ଏ ଗୁଣ ପଥ ଯେଉଁ ଭାବ । ଏ କଥା କହ ଗୁରୁଦେବ ॥
ଶୁଣ ହେ ମୁକୁନ୍ଦ ସୁବୁଦ୍ଧି । କହିବୁ ତହିଁର ଯେ ବିଧି ॥
ଶୁଣ ହେ ଅନନ୍ତ ମହନ୍ତ । କହିବା ତହିଁର ଯେ ମତ ।୬୦।
ସତାନ୍ଦ୍ ବୈରାଗ୍ୟ ଲକ୍ଷଣ । ଦଶ ବା ବାର ବରଷେଣ ॥
ଗୃହ ତେଜିଣ ସେ ଗମନ । ରହିବ ଶ୍ରୀଗୁରୁ ଭବନ ॥
ବାରବରଷ ଗୁରୁ ସେବା । ମନ୍ତ୍ର ଯନ୍ତ୍ର ତନ୍ତ୍ର ଶିଖିବା ॥
ଅଷ୍ଟ ପ୍ରହର ସେବାମାନ । ରାଧା କୃଷ୍ଣଙ୍କ ଗୁଣଗାନ ॥
ରାତ୍ର ଦିବସ ସେବାଦଣ୍ଡ । କୋଠ ଗୁମ୍ଫା ସମାଧି ପିଣ୍ଡ ॥
ଅବାଡ଼ ଅଷ୍ଟଗୁଣ ସାଧି । ଗୁରୁ ସେବାରେ ଯେତେ ବିଧି ॥
ସାଧନେ ପଜା ଯେବେ ହେବ । ଗୁରୁଙ୍କ ମେଲାଣି ମାଗିବ ॥
ଦକ୍ଷିଣ ଦିଗେ ଚଳିଯିବ । ଶ୍ରୀନୀଳକନ୍ଦରେ ରହିବ ॥
ସେତୁ ବନ୍ଧକୁ ଚଳିଯାଇ । ଦକ୍ଷିଣ ପଶ୍ଚିମେ ଫେରଇ ॥
ବଦରି ଶ୍ରୀ ବୃନ୍ଦାବନରେ । ଅଯୋଧ୍ୟା ଗଙ୍ଗା ନଦୀତୀରେ ॥
ନଦିଆ ରାଜକେନ୍ଦୁ ଦେଶ । ସମଲପୁରୁ ପୂର୍ବେ ଆଶ ।୪୧।
ସ୍ୱେଚ୍ଛାମ୍ବର ବନ ଦର୍ଶନ । ମିଳିବ ଜଳ ସ୍ଥଳ ସ୍ଥାନ ॥
ବାର ବରଷ ବୁଲି ମୁହିଁ । ଗୁରୁ ଭୁବନେ ଆସି ରହି ॥

ସେବା ପୂଜା ଯେବ ମିଳିବ । ଦେଇଣ ପାଦେ ଓଳଗିବ ॥
ଶ୍ରୀଗୁରୁଙ୍କ ମେଳଣି ମାଗିଣ । ରହିବ ସୁବର୍ଣ୍ଣ ସ୍ଥାନେଣ ॥
ଉତ୍ତମ ପୂର୍ଣ୍ଣ ସ୍ଥାନ କରି । ଶ୍ରୀମୂର୍ତ୍ତି ରୂପ ସ୍ଥାପିକରି ॥
ଔଷଧ ଫଳ ପୁଷ୍ପମାନ । ବୃକ୍ଷ ରୋପିବ ଯେ ଯତନ ॥
ଭଜନ କରିଣ ସଜନ । ରଖିବ ଶ୍ରୀମୂର୍ତ୍ତି ସ୍ଥାନେଣ ॥
ପ୍ରସାଦ ଉପହାର ଯେତେ । ଖଦୋଇ ଦେବ ଯେ ସୁଚିତେ ॥
ବୈଷ୍ଣବ ବ୍ରାହ୍ମଣ ଅତିଥି । ସଂସାରେ ଦୁଃଖୀ ଯେବା ଥାନ୍ତି ॥
ସେହାଙ୍କୁ ଅନ୍ନ ଦାନ ଦେବ । ସଂସାର ସୁଖ ସେ ପାଇବ ॥
ଲୋକରେ ଇନ୍ଦ୍ର ସମ ନାହିଁ । ଯୋଗୀନ୍ଦ୍ର ବୈରାଗୀଟି ଏହି ॥
ସମାଧି ଯେ ଜନ ସାଧଇ । କ୍ଷଣେ ଦଣ୍ଡେ ବା ନ ମିଳଇ ।
ଆତ୍ମାକୁ ଯେ ଜନ ସାଧଇ । ସାଧୁ ସଙ୍ଗମ ତାର ହୋଇ ॥
ଶ୍ରୀଭାଗବତେ ଏ ପ୍ରମାଣ । ଶ୍ରୀଭଗବତ ଗୀତାରେଣ ॥
ଏହା କହନ୍ତି ଯେଉଁ ପ୍ରାଣୀ । ସଂସାର ସୁଖ ଭୁଞ୍ଜେ ପୁଣି ॥
କୁବୁଦ୍ଧି ପ୍ରକୃତ ଯେମାନେ । ସ୍ତ୍ରୀଙ୍କି ଆବୋରି ଯତନେ ॥
ଇନ୍ଦ୍ରୀ ପ୍ରବଳେ ସ୍ତ୍ରୀ ସଙ୍ଗ । ରଜ ଉଦୟ ରତିରଙ୍ଗ ॥
ରତିରୁ ପୁତ୍ର ଜାତ ହୋଇ । ପୁତ୍ର ଦେଖିଣ ମୋହଯାଇ ॥
ରଜ ଉଦୟେ ଛଟପଟ । ଅରଜି ପୋଷୁଥାଇ ପେଟ ।୬୦।
ବନ୍ଧୁ ବାନ୍ଧବମାନ କରେ । ଧନ ହରାଇ ଦେଇ ପାରେ ॥
ଗୁରୁ ବୈଷ୍ଣବ ନ ସେବଇ । ଧନ ହରାଇ ସନ୍ତ୍ରାଥାଇ ॥
କାଳେ ସେ ପୁତ୍ର ନାଶ ଯାଇ । ଦାରା ଦୁଃଖେ ସେ ମରଇ ॥
ଦାସ ଦାସୀ ସେ ଛାଡ଼ି ଯାନ୍ତି । ଗ୍ରାମ ପଣ୍ଡିତେ ନ ଚିହ୍ନନ୍ତି ॥
ବୃଥାରେ ଲଭିଲେ ମରଣ । କୁବୁଦ୍ଧି ଜନ ଏ ଲକ୍ଷଣ ॥
ସୁବୁଦ୍ଧି ଯେଉଁ ଜନମତ । ସଂସାରେ ବୈରାଗୀ ହୁଅନ୍ତି ॥
ସେହି ଲକ୍ଷଣ ମନେ ଧରି । ଛାଡ଼ି ଦୁ ନଶ୍ୱ ଧାମ ଶରୀର ॥
କାମ କଳନା ମନ୍ଦ ନାହିଁ । କନିଷ୍ଠ ଗୋପୀ ଅଙ୍ଗ ହୋଇ ॥
ଉଦ୍ୟାନ ପବନ ମଧ୍ୟେ । ବଳି ବୃନ୍ଦାବନ ମାଧ୍ୟେ ॥

ଏ ଛଡ଼ ଜାତ ବଇରାଗ । ଜନ୍ମରେ ଅଣି ଅଛ ଭାଗ ।୭୦।
ଶୁଣ ସନ୍ତୋଷ ସଙ୍ଗ ଗୋପ । କହିବା ସଂଯୋଗୀ ସ୍ୱରୂପ ॥
ସଂଯମୀ ବୈରାଗ୍ୟ ଲକ୍ଷଣ । ଯେ ଅବା କରନ୍ତି ଧରଣ ॥
ଦାର ପୁତ୍ରଙ୍କୁ ଆରାଧନ୍ତି । ଧନ ସଞ୍ଚି ଆଚରନ୍ତି ॥
ଦେହ ଅବଃ ଅନ୍ନ କମାଇଣ । ଗୃହରେ ରନ୍ଧନ କରିଣ ॥
ଆପଣା କୁଟୁମ୍ବ ଲେଖିଣ । ତଣ୍ଡୁଳ ଦେବ ଯେ ଗଣିଣ ॥
କୁଣିଆ ଅଟେ ତାର ସାର । ଯତନେ ଦିଏ ତା ମୁଖର ॥
ବନ୍ଧୁକୁ ଯେତେ ସବେ ଦେଇ । ଆପଣେ ସେରୂପେ ଭୁଞ୍ଜଇ ॥
ସେରୂପେ ଅତିଥି ବୈଷ୍ଣବ । ସେବା ପୂଜାରେ ଦଣ୍ଡବ ॥
ବୈଷ୍ଣବ ଅତିଥି ମୁଖରେ । କୁଣିଆ ବନ୍ଧୁ ସହୋଦରେ ॥
ବସିଣ ଆନନ୍ଦ ହସିରେ । ମଙ୍ଗଳ କରିବ ଗୃହରେ ।୮୦।
ଗାଉଣା ବାଜେଣା କରିବ । ସୁଖରେ ଦିନ ବହୁଥିବ ॥
ମନ୍ତ୍ରକୁ ସୁମରଣ କରି । ଅଷ୍ଟ ପ୍ରହର ଚିତ୍ତେ ଧରି ॥
ଜ୍ୟୋତିକୁ କରୁଥିବ ଧ୍ୟାନ । ଅବାଡ଼ ଛାୟା ଦରଶନ ॥
ସଂଯୋଗୀ ବଇରାଗୀମାନେ । ଏହି ଲକ୍ଷଣ ଧରି ମନେ ॥
ଷଡ଼ ଗୋପାଳ ତୁମ୍ଭେ ପୁଣ । ଧର ହେ ଏହି ଲଇକ୍ଷଣ ॥
ଯତିନ୍ଦ୍ର ବୈରାଗୀ ସଂଯୋଗୀ । ବାର ଗୋପାଳ ହୋଇ ସଙ୍ଗୀ ॥
ପୃଥିବୀ ଭୂମି କରି ଆସ । ରହିବ ଆସି ନିଜ ବାସ ॥
ବୟ ତ ହୋଇଛି ତୁମ୍ଭର । ନୋହିଛି ସ୍ତ୍ରୀ ସଙ୍ଗ ଆର ॥
ସ୍ତ୍ରୀଙ୍କର ତୁମ୍ଭ ହେତୁ ହେଉ । ଯୌବନ ଅଙ୍ଗେ ଶୋଭାପାଉ ॥
ତୁମ୍ଭର ରତି ଚିତ୍ତ ହେଲେ । ସଂଯୋଗେ ଗୃହ କର ଭଲେ ॥
ଶୁଣି ରହସ୍ୟ ନାଥମାନେ । ଏ କଥା ଧରିଥିବ ମନେ ।୯୧।
ମୁକୁନ୍ଦ ଅନନ୍ତ ଗୋବିନ୍ଦ । ବସ୍ତ ଯାଦବ ହେ ଆନନ୍ଦ ॥
ସଂଯୋଗୀ ବଇରାଗୀ ଛଡ଼ । ସଂଯୋଗେ ଗୃହର ଝଗଡ଼ ॥
ଏ ଛଡ଼ ଅଂଶେ ବଂଶମାନେ । ସଂଯୋଗ ବୈରାଗ୍ୟ ବିଧାନେ ॥
ରହିବ କିଛି ଦିନ ଅଂଶ । ତୁମ୍ଭର ବଢ଼ିବ ଯେ ବଂଶ ॥

ତୁମ୍ଭଙ୍କୁ କ୍ଳେଶ ଦୁଃଖ ନାହିଁ । ତୁମ୍ଭ ପୁତ୍ରଙ୍କୁ ସୁଖ ହୋଇ ॥
ତୁମ୍ଭର ନାତିମାନେ ପୁଣ । କଷ୍ଟ ଭୁଞ୍ଜିବେ ସୁଖ ପୁଣ ॥
ପଣ ଅଣନାତି ତୁମ୍ଭର । ପଡ଼ିବେ ଦୁଃଖସ୍ୱର ଠାର ।୪୮।
ସଂଯୋଗୀ ବୈରାଗ୍ୟ ଲକ୍ଷଣ । ମୁକୁନ୍ଦ ଅନନ୍ତ ଦୁ ଜଣ ॥
ସଂଯୋଗୀ ବୈରାଗ୍ୟ ଲକ୍ଷଣ । ସଂଯୋଗେ ଗୃହେ ଯେ କରଣ ॥
ପୁତ୍ରମାନେ ପାଳିଲେ ପୁଣ । ଗୁରୁ ପୁତ୍ରଙ୍କୁ ସମର୍ପଣ ॥
ଯତନେ କୁଟୀରେକ କରି । ରହିବ କୁଟୁମ୍ବ ଆବୋରି ॥
ସମାଧି କରିବେ ସାଧନ । ନିଷ୍ଠାନ୍ତ ହେବ ସେ ଦିନେଣ ॥
ସେବା ପୂଜା ପୁତ୍ର କରିବେ । ଆପଣେ ତାହା ଦେଖୁଥିବ ॥
ପୁତ୍ର କୁଟୁମ୍ବମାନେ ମିଳି । ସେବା କରିବ ଯେନି କେଳି ॥
ଶୁଣି ସଂଯୋଗ ବଇରାଗୀ । ମୁକୁନ୍ଦ ଅନନ୍ତ ସୁଭାଗୀ ॥
ତୁମ୍ଭେ ସୁଭାଗ୍ୟ ହେ ସୁଭୂତ । ଶୁଣ ବୈରାଗୀ ସୁଖ ରସ ॥
ତୁମ୍ଭର ମାତା ପିତା ଧନ୍ୟ । ତୁମ୍ଭର ଜୀବନ ତ ଧନ୍ୟ ॥
କେତେ କେତେ ବା ଗୋପକୂଳ । ଉଦ୍ଧାର ହେବେ ଗୋପବାଳ ॥
ଶିଖିବେ ଖୋଲ କରତାଳ । ତୁମ୍ଭର ବଂଶ ଯେ ଉଜ୍ଜ୍ୱଳ ॥
ସଂଯୋଗୀ ନୋହିଲେ ତୁମ୍ଭେ ତ । ମୂଢ ହୁଅନ୍ତେ ଗୋପସୁତ ॥
କାହୁଁ ଶିଖନ୍ତେ ଖୋଲତାଳ । କା ସଙ୍ଗେ ହୁଅନ୍ତେ ଏ ମେଳ ॥
ଶୁଣି ସନ୍ତୋଷ ଗୋପସୁତ । କହିବା ଊର୍ଦ୍ଧ୍ୱବାହୁ ମତ ॥
ଶୁଣ ହେ ମୁକୁନ୍ଦ ମହାନ୍ତ । କହିବା ଊର୍ଦ୍ଧ୍ୱବାହୁ ମତ । ୧୯୫ ॥

ଦାରା ଦୁହିତା ପୁତ୍ର ଧନ । ଆବୋରିଥିବ ଯେ ଯତନ ॥
ଷୋଳଶ ବାର ବରଷରେ । ଗୃହ ଛାଡ଼ିବ ତତପରେ ॥
ଉତ୍ତମ ପୁଣ୍ୟ ନଦୀ ସ୍ଥାନ । ସେଠାରେ କରି ଗୃହମାନ ॥
ବିବିଧ ଫଳ ପୁଷ୍ପମାନ । ଶ୍ରୀମୂର୍ତ୍ତି ରଖିବ ଯତନ ॥
ଯେ ଅବା ଉପୁଜିବ ମହୀ । ସକଳ ଦେବ ସବୁ କାହିଁ ॥
ବ୍ରହ୍ମ ଚଣ୍ଡାଳ ବୈଶ୍ୟ ଶୂଦ୍ର । ବୈଷ୍ଣବ ଅତିଥି ଦରିଦ୍ର ॥
ଏହାଙ୍କୁ ଦେବ ଅନ୍ନ ପାଣି । ସକଳ ଆତ୍ମା ଏକ ଜାଣି ॥

ଯେବେ ଏତେକ ନ ପାରିବ । ଶ୍ରୀ ଗୁରୁ ମଠରେ ରହିବ ॥
ଗୁରୁଙ୍କୁ କୃଷ୍ଣ ସମ କରି । ସେବା କରିବ ମନେ ଧରି ॥
ଗୁରୁଙ୍କ ଯେତେ ଦ୍ରବ୍ୟ ଥିବ । ଯତନ କରି ତା ରଖିବ ॥
ଉଦ୍ଧବ ବଇରାଗୀ ମତ । ଧରିଲା ରାମଚନ୍ଦ୍ର ସୁତ । ୧୨୫ ।
ଗୋରୁ ମଇଷୀ ଗୃହପଣ । ଗ୍ରହଣ ଯତନ ମନେଣ ॥
ଆମ୍ଭ ସେବାରେ ତତ୍ପର । ରହିଲା ଆମ୍ଭର ସେବାର ॥
ଉଦ୍ଧବ ବଇରାଗ ଗୁଣ । ଧରିଲା ରାମ ଗୋପ ପୁଣ ॥
ଭ୍ରାତାଙ୍କୁ ଧନ ପଣ ଦେଲା । ଅମ୍ଭର ସେବାରେ ରହିଲା ॥
ପୁଣ ପଚ୍ଛୁରୁଅଛୁ ଆମ୍ଭେ । ମନ ବୈରାଗ୍ୟ କହ ତୁମ୍ଭେ ॥
ଶୁଣ ହେ ଚରଣ ଗୋପାଳ । କହୁରୁ ତହିଁର ଯେ ଫଳ ॥
ପୁତ୍ର କୁଟୁମ୍ବ ଅବା ଲୋକ । ମନ ସଙ୍ଗତେ ଥାନ୍ତି ମଜ୍ଜି ॥
ପୁତ୍ରଙ୍କୁ ଗୃହ ସମର୍ପିଣ । ମନେ ଭ୍ରମଣ ଥାନ୍ତି ପୁଣ ॥
କେବେ ବା ତୀର୍ଥସ୍ଥାନେ ଥାନ୍ତି । କେହୁ ବା ଗୃହରେ ରହନ୍ତି ॥
ମନର ସୁଖ ଯେଉଁସ୍ଥାନେ । ରହନ୍ତି ନିଶ୍ଚିନ୍ତ ଯେ ମନେ ॥
ମନକୁ ଅମନେ ରଖନ୍ତି । ନିମନ୍ତେ କୃଷ୍ଣ ରୂପ ଚିନ୍ତି ॥
ଗୃହ ସ୍ଥାନରେ ନ ରହିଣ । ବନସ୍ତେ କରନ୍ତି ଭ୍ରମଣ ॥
ଶାଗ କନ୍ଦମୂଳ ଦୁଧରେ । ଉଦର ପୋଷି ନିଶ୍ଚିନ୍ତରେ ॥
କେବେ ବା ଅନ୍ନ ଜଳ ଖାଇ । ମେଳା ମୌଖିବେ ଖେଳୁଥାଇ ॥
କେବେ ବା ସୁଜନ ଗୃହରେ । ରହନ୍ତେ ମନର ସୁଖରେ ॥
ମନ ଭ୍ରମାଇ ଭ୍ରମୁଥାନ୍ତି । ମନ ସଙ୍ଗତେ ତାଙ୍କ ପ୍ରୀତି ॥
ମନରେ ବୈରାଗ୍ୟ ଲକ୍ଷଣ । ଧରିଲା ବିଷ୍ଣୁ ସୁତ ପୁଣ ॥
ଏମନ୍ତେ ତ୍ରିବିଧ ପରକାର । ଶୁଣ ହେ ତୁମ୍ଭେ ଗୋପବାର ॥
ଉତ୍ଥାନ ପବନ ଯେ ଦୁଇ । ଜାଣ ବୈରାଗ୍ୟ ସାର ଏହି ॥
ସଂଯୋଗୀ ବଇରାଗୀ ସାର । ଅନନ୍ତ ମୁକୁନ୍ଦ କୁମର ॥
ଉଦ୍ଧବ ବଇରାଗ୍ୟେ ଭଲ । ରାମ ଯେ ଚନ୍ଦ୍ର ସୁତ ତୁଲ ॥
ମନ ଯେ ବଇରାଗ୍ୟେ ସୁଖୀ । ବିଷ୍ଣୁ ସୁତଙ୍କୁ ପୁଣ ଲେଖି ॥

ଆବର ଅଧ୍ୱ ଏକ ବାଧ୍ୱ । ଗୁପତ ବୈରାଗ୍ୟ ପ୍ରସିଦ୍ଧ ॥
ଶୃଦ୍ରର ଝଂଗଡ଼େ ଥାଆନ୍ତି । ଗୁରୁ ବୈଷ୍ଣବେ ପୂଜେ ନିତ ॥
କୁଣ୍ଡଆ ବନ୍ଧୁ ସହୋଦର । ଭୁଞ୍ଜନ୍ତି ଅନ୍ନ ଘୃତ ସାର । ୧୫୦ ।
ଗୁପତ ବଇରାଗୀମାନେ । ଏ ଗୃହ ଫଳ ଲଭେ ପୁଣ୍ୟେ ॥
ଶୃଦ୍ରେ ଦଅନ୍ତି ଅନ୍ନ ଦାନ । ତେଣୁ ଲଭନ୍ତି ଗୃହ ପୁଣ୍ୟ ॥
ଭରଥ ଧର ମୁଁ ଯାଦବ । ଗୁପତ ବଇରାଗୀ ସ୍ୱଭାବ ॥
କମାର ରାମ ଦୁଇ ଜାଣ । ରାମ କୁମର ଏକ ଜାଣ ॥
ଦକ୍ଷିଣ ଚନ୍ଦ୍ରେ ନିରଞ୍ଜନେ । ଗୁପତ ବୈରାଗ୍ୟ ଏମାନେ ॥
ଏମନ୍ତେ ପଞ୍ଚ ପରକାର । ମନେ ଧରନ୍ତି ଯେଉଁ ନର ॥
ସଂସାର ମଧ୍ୟେ ସେହୁ ସୁଖୀ । ଏହା ନ କଲେ ହୋନ୍ତି ଦୁଃଖୀ ॥
ଚବ୍ୱଣ ଗୋପାଳେ ହେ ଶୁଣ । ଏ ପଥ କର ହେ ଧାରଣ ॥
ଅଣଅକ୍ଷର ଏକାକ୍ଷର । ତାରକ ଶ୍ୟାମ ପଞ୍ଚାକ୍ଷର ॥
ହରେରାମ ଯେ ପାଞ୍ଚ ମନ୍ତ୍ର । ଜପ କରିବ ଦୃଢ଼େ ତନ୍ତ୍ର ॥
ଗୋଲୋକ ମନ୍ତ୍ର ଅଣକ୍ଷର । ସତ୍ୟରେ ଏକାକ୍ଷର ସାର ॥
ସତ୍ୟରେ ତାରେକ ମନ୍ତ୍ରର । ଦ୍ୱାପରେ ଶ୍ୟାମ ପଞ୍ଚାକ୍ଷର ॥
ହରେରାମ ଯେ ମନ୍ତ୍ର କହି । କଳିଯୁଗରେ ସାର ଏହି ॥
ହରେରାମକୁ ଢନ ଆଣି । କଲେକ ମନ୍ତ୍ରେ ଏକ ପୁଣି ॥
ହରେରାମ ଯେ ମନ୍ତ୍ର କଲେ । ନଦିଆ ନଗ୍ରେ ବୁଝାଇଲେ ॥
ପ୍ରାଣୀ ତ ଧର ନ ପାରିବେ । ଅଳପ କହିଲେ ବୁଝିବେ ॥
ଉଲଟ କଲେ ନାମ ପୁଣ । ହରେକୃଷ୍ଣ ଯେ ମନ୍ତ୍ର ଗଣ ॥
ଛଡ଼ ଅକ୍ଷର ବୁଝାଇଲେ । ତେର ନାମକୁ ଗୋପ୍ୟ କଲେ ॥
ଏରୂପେ ବୈରାଗ୍ୟ ଲକ୍ଷଣ । ଅଚ୍ୟୁତ କଥା ମନେ ଘେନ ॥

ଇତି ଶ୍ରୀ ଗୁରୁଭକ୍ତଗୀତା କୃଷ୍ଣାସ୍ୱଖଣ୍ଡେ ବୈରାଗ୍ୟ
ଲକ୍ଷଣେ ନାମ ଚତୁର୍ଥ ମଣ୍ଡଳ ।

---

## ସପ୍ତମ ପଟଳ

ସ୍ମୂରେ ପଶ୍ବରୁଛନ୍ତି ଦୁଇ । ମୁକୁନ୍ଦ ଅନନ୍ତ ଦ୍ୱିଜାଇ ॥
ଗୁରୁ ଦର୍ଶନେ କିବା ଫଳ । କହିବା ଏଥିର ମଙ୍ଗଳ ॥
ବୈଷ୍ଣବ ସେବାରେ ଯେ ଗତି । ଅନ୍ତଥେ କିବା ପୁଣି ହୋନ୍ତି ॥
ସୋଦରେ କିବା ହୋଇସ୍ତେ ନାଶ । କୁଣିଆ କିବା ପଞ୍ଚଶେଷ ॥
ବନ୍ଧୁକୁ ଦେଲେ କିସ ହୋଇ । ମାତା ସେବିଲେ କିସ ପାଇ ॥
ପିତା ସେବିଲେ କିସ ଫଳ । ଏଥିର କହିବା ସୁଫଳ ॥
ଶୁଣ ସୁମନେ ଗୋପସୁତ । କହିବା ତହିଁର ଯେ ମତ ॥
ଏକାଦଶୀ ଦିନରେ ଶିଷ୍ୟ । ଗୁରୁ ଦର୍ଶନେ ପାପ ନାଶ ॥
ଅମାବସ୍ୟା ଦିନ ଦରଶନ । ପୂଜିଲେ ହୋଇସ୍ତେ ଧନ ଜନ ॥
ସଂକ୍ରାନ୍ତିରେ ସେବ ଗୁରୁ । ବ୍ୟାଧି ରୋଗର ଶିଷ୍ୟ ତରୁ ॥
ପୂର୍ଣ୍ଣିମୀ ଦିନ ଗୁରୁ ସେବା । ପୂଜିଲେ ରାଜ୍ୟ ଯଶ ଦେବା ॥
ଦ୍ୱାଦଶୀ ଦିନ ଗୁରୁ ଅନ୍ନ । ଦେଲେ ଗୋଲୋକେ ହୋଏ ସ୍ଥାନ ॥
ବରଷ ଲେଖି ଅନ୍ନ ଦେଲେ । ଯମ ଡରଇ ତାକୁ ଭଲେ ॥
ଶ୍ରୀ ଗୁରୁ ସେବା ଯେ କରଇ । କୋଟି ତୀର୍ଥର ଫଳ ପାଇ ॥
ଗୁରୁ ଚରଣ ଯେ ଘଷଇ । ସ୍ୱରୂପ ପାପ ଛୁଟିଯାଇ । ୧୪ ।
ଗୁରୁଙ୍କ ଅବଶେଷ ଖାଇ । ନିର୍ମାଲ୍ୟ ଠାରୁ ଅଧିକଇ ॥
ଗୁରୁ ଚରଣ ଜଳ ଖାଇ । ଗଙ୍ଗା ସ୍ନାହାନ ଫଳ ପାଇ ॥
ଗୁରୁଙ୍କୁ ସୁଆସନ ଦେଇ । ବସନ ବହୁତ ମିଳଇ ॥
ଗୁରୁ ମୁକତି ଗତି ଦାତା । ଗୁରୁଟି ଜୀବ ଉଦ୍ଧାରନ୍ତା ॥
ବିବାହ ବେଳେ ବିପ୍ରମାନେ । ଗୁରୁ ସୁମରନ୍ତି ଯତନେ ॥
ମରଣ କାଳେ ସାଧୁଜନ । ବୋଲନ୍ତି ଗୁରୁଙ୍କର ଧ୍ୟାନ ॥
ପିତୃ ପୂଜନ ଶ୍ରାଦ୍ଧକାଳେ । ଗୁରୁ ସୁମର ହୃଦସ୍ଥଳେ ॥
ଗମନେ କାର୍ଯ୍ୟ ପଥେ ଯାଇ । ଗୁରୁ ସୁମରି ଫଳ ପାଇ ॥
ଗୃହ ଭୋଜନ ରନ୍ଧିବାବେଳେ । ଗୁରୁ ପୂଜିଲେ ଅନ୍ନ ମିଳେ ॥

ଏଣୁ ଗୁରୁ ବୈଷ୍ଣବ ଏକ । ସଶ କରନ୍ତି ଯେ ବିବେକ ।।
ପ୍ରଥମେ ବୈଷ୍ଣବ ଯେ ହୋଇ । ଗୁହ୍ମାର ଗୃହରେ ମିଳଇ ।।
ପ୍ରତେ ହୋଇଲେ ଗୁରୁ ହୁଏ । ଗୁରୁ ବୈଷ୍ଣବ ଭିନ୍ନ ନୋହେ ।।
ଗୁରୁ ପୂଜିଲେ ଯେତେ ଫଳ । ବୈଷ୍ଣବ ପୂଜା ସେତେ ତୁଲ ।।
ଶ୍ରଦ୍ଧାରେ ଗୁରୁ ବଇଷ୍ଣବ । ଶ୍ରଦ୍ଧାରେ ପୂଜା ଯେ କରିବ । ୩୦ ।
ଜପ କହିବା ତାଙ୍କ ପୁଣ୍ୟ । ଦେବେ କରନ୍ତି ତାକୁ ଧନ୍ୟ ।।
ଧନ ଅରଜି ଯେଉଁ ଶିଷ୍ୟ । ଗୁରୁ ସେବାକୁ ଯେ ବିରସ ।।
ଧିକ ଯେ ତାହାଙ୍କ ଜୀବନ । ଶୂକର କୁକୁର ଯେସନ ।।
କୁଟୁମ୍ବ ପୋଷି ଦିନ ନେଇ । ମଲେ ଶୂକର ଜନ୍ମ ପାଇ ।।
ଚୌରାଶୀ କୋଟି ଯୋନି ଭ୍ରମି । ମନୁଷ୍ୟ ଜନ୍ମେ ଥିଲା ଗମି ।।
ପୁଣ ସେ କୃପଣ ହୋଇଲା । ଏଣୁ ସେ ଚୌରାଶୀ ଗମିଲା ।।
ପୁଣ୍ୟ ମାନବ ଦେହ ପାଇ । ଗୁରୁ ସେବିଲା ମନେ ନାହିଁ ।।
ବୈଷ୍ଣବ ନ କଲା ପୂଜନ । ଜନ୍ମ ଲଭିଲା ଶ୍ୱାନ ଜନ ।।
ମାତା ପିତାର ସେବା କହି । ଫିଟିବ ଆତ୍ମର ସନ୍ଦେହ ।।
ଶୁଣ ହେ ସୁଦାମ ଗୋବିନ୍ଦ । ଅନନ୍ତ ମୁକୁନ୍ଦ ଆନନ୍ଦ । ୪୦ ।
ପ୍ରଥମେ ମାତା ଗୁରୁ ହୋଇ । ଉଦରେ ଧରିଲେ ଯେ ନେଇ ।।
ପାଞ୍ଚ ଦିନ ଯେ ଗର୍ଭେ ରହି । କୁମ୍ଭାର ଚକ୍ର ପ୍ରାୟେ ହୋଇ ।।
ଫେରନ୍ତେ ମାତା ଦୁଃଖ ହୋୟେ ! ଗୁଣ କି ଶୁଝି ପାରେ ପୋଏ ।।
ବୁଲଣ ଦଶମ ଯେ ଦିନ । ନଷ୍ଟଲେ ରହେ ରଜ ସ୍ଥାନ ।।
ପନ୍ଦର ଦିନେ ସାଞ୍ଚ ହୋଏ । ପକ୍ଷ ପକ୍ଷକେ ବଢ଼େ ଜାୟେ ।।
ବାଢ଼ନ୍ତେ ମାତା ଦୁଃଖ ପାଇ । ଅନ୍ନ ଭୁଞ୍ଜି ଣ ନ ପାରଇ ।।
ଶୟନେ ସୁଖ ଆଉ ନାହିଁ । ଗମନେ ବହୁ ଦୁଃଖ ପାଇ ।।
ଦଶମ ମାସରେ ଜନମ । ଯୋନି ଗମନେ ପାଏ ଶ୍ରମ ।।
ପୁଣ ପାଞ୍ଚ ବରଷ ହୁଏ । ନରକ ସେବା କରୁଥାଏ ।।
ବନ୍ଦୀର ପ୍ରାୟେ ବନ୍ଦୀ ହୋଇ । ଶରୀର ସୁଖ ଆର କାହିଁ ।।
ମନରେ କଲପନା ଥାଇ । ଏହାକୁ ପାଳୁ ଅଛୁ ମୁହିଁ । ୫୧ ।

ମୋର ଅନେକ କାଳେ ପୁଣି । ମତେ ଏ ଦେବ ଅନ୍ନ ପାଣି ॥
ଏହୁ କାରଣେ ପୁତ୍ର ଜାତ । ସେବା କରଇ ମାତ ସୁତ ॥
ଏଣୁ ଏ ପୁତ୍ରମାନେ ଶୁଣ । ସେବିବ ମାତାଙ୍କ ଚରଣ ॥
ମାତାଙ୍କୁ ଅନ୍ନ ବସ୍ତ୍ର ଦେବ । ସୁସ୍ଥାନେ ନିଶ୍ଚିନ୍ତେ ରହିବ ॥
ବଚନ ତାଙ୍କ ପାଳୁଥିବ । ବିମୁଖ କେବେ ନ କରିବ ॥
ସତ୍ୟରେ ଅନ୍ନ ଦାନ ଦେବ । ଏହାକୁ ପୁଣ୍ୟରେ ଲେଖିବ ॥
ଏ ସେବା ଯେ ପୁତ୍ର ନ କଲା । ସେ ପୁତ୍ର ଜୀଇ ଜୀଇ ମଲା ॥
ସେ ପୁତ୍ର ମୂର୍ଖ ସମ ତୁଲ । ଧିକ ସେ ପୁତ୍ର ମଲେ ଭଲ ॥
ମାତାର ଋଣ ନ ଶୁଝିଲା । ଋଣୀ ହୋଇଣ ନାଶ ଗଲା ॥
ଜନକ ମାତାର କଷଣ । ଶୁଝିବ କାହୁଁ ପୁତ୍ର ପୁଣ ॥ ୭୧ ।
ମାତାର ଗୁଣ ଅବା ଯେତେ । ମୁଖେ କେ କହିପାରୁ କେତେ ॥
ଏଣୁକି ମାତା ମୂଳ ଗୁରୁ । ସୁପୁତ୍ର ସେବା ଏଣୁ କରୁ ॥
ପିତାର ଗୁଣ ଏବେ କହ । ଫିଟିବ ମନର ଯେ ମୋହ ॥
ଶୁଣ ବାଳକ ବୃନ୍ଦାବନ । ଉଦ୍ଧ୍ୱଆନ ବସ୍ତ୍ର ହେ ପବନ ॥
ପାଞ୍ଚ ବରଷ ଭୋଗ କଲେ । ଖଡ଼ି ଛୁଆଁଇ ପିତା ଭଲେ ॥
ବିଦ୍ୟା ପଢ଼ାଇ କରେ ବଡ଼ । ବିଭା ସଂଯୋଗରେ ଝଗଡ଼ ॥
ଧନ ଅରଜ ଯେତେ ଥାଇ । ତାହାର ଅର୍ଥରେ ହରାଇ ॥
ଗୁରୁ ବୈଷ୍ଣବ ନ ଦଅଇ । ପୁତ୍ର ସ୍ନେହରେ ଧନ ବଇ ॥
ଏ ପୁତ୍ର ସଞ୍ଚିଥିଲେ ପୁଣ । ପ୍ରାନ୍ତେ ପୋଷିବ ଏ ସୁଖେଣ ॥
ଏଣୁ ପିତାକୁ ସେବା କର । ପୂଜିବ ଦେଇ ଅନ୍ନ ବାର ॥
ଉତ୍ତମ ଗୃହେ ସ୍ଥାନ ଦେବ । ଉତ୍ତମ ଭୋଗ ଭୁଞ୍ଜାଇବ ॥
ଉତ୍ତମ ବସନ ଅଙ୍ଗରେ । ବଚନ ପାଳିବ ହୃଦରେ । ୭୨ ।
ମରଣ କାଳ ଯାଏ ପୁଣ । ପରବୃତ କାର୍ଯ୍ୟ ଯେ କରିଣ ॥
ମାତା ପିତାକୁ ଏଡ଼ି କରି । ମନ ଗର୍ବରେ କାର୍ଯ୍ୟ କରି ॥
ସଂସାରେ ସୁଖ ତାଙ୍କ ନାହିଁ । ଅନ୍ନ ବସନ ନ ମିଳଇ ॥
ତାହାଙ୍କୁ ବୃଦ୍ଧକାଳେ ପୁଣ । ଦୁଃଖ ପାଆନ୍ତି ସେ ହୃଦେଣ ॥

ସେ ପୁତ୍ର ଅଂଶ ନ ବଢ଼ଇ । ଗୃହରେ ଅନ୍ନ ନ ମିଳଇ ॥
ଏଣୁଟି ମାତା ପିତା ଗୁରୁ । ଗୁରୁ ବୈଷ୍ଣବ ସମ କରୁ ॥
ମାତା ପିତା ଗୁରୁ ବୈଷ୍ଣବ । ଏ ଚ୍ୟରି ଅଙ୍ଗ ଏକ ଭାବ ॥
ସୁପୁତ୍ର ଯେମାନେ ହୁଅନ୍ତି । ଏ ଚ୍ୟରି ଅଂଶକୁ ପୁଜନ୍ତି ॥
କୁପୁତ୍ର ଯେଉଁ ଜନମାନେ । ବିମୁଖ କରି ଏହୁ ଜନେ ॥
ଦାରକୁ ପୋଷିଣ ଆନନ୍ଦ । ଅନ୍ତ୍ୟେ ଲଭନ୍ତି ବଡ଼ ଧନ୍ଦ ॥
ଅଳପ ଦିନେ ମୃତ୍ୟୁ ହୋଏ । ଅଂଶ ନ ରହେ ତାର ଦେହେ ॥
ଏଣୁ ୪ ଚ୍ୟରି ଅଙ୍ଗ ସାର । ଶୁଣ ହେ ମୁକୁନ୍ଦକୁମର ॥
କଳିରେ ଏ ଚ୍ୟରି ଯେ ସାର । ଶୁଣ ହେ ଅନନ୍ତକୁମର ॥
ନାମକୁ ଲକ୍ଷ୍ୟ କରୁଥିବ । ମନ୍ତ୍ରକୁ ମନରେ ଭଜିବ ॥
ମାତା ପିତାଙ୍କୁ ସେବା କରି । ରହିବ କୁଟୁମ୍ବ ଆବରି ॥
ଏ ପୁତ୍ର ଗୃହରେ ଉତ୍ତମ । ପୃଥ୍ୱୀରେ ସାର ଅଟେ ଜନ୍ମ ॥
ସୁପୁତ୍ର ତୁମ୍ଭେ ଷଡ଼ ଯୋଏ । ସେବିବ ମାତା ପିତା ପାଦ୍ୟେ ॥
ବାର ବରଷ ଫେରି ଆସ । ରହିବ ମାତା ପିତା ପାଶ ॥
ସଂଯୋଗୀ ଲକ୍ଷଣ ଧରିବ । ଗୃହ ଆବରି ରହିଥିବ ॥
ଅତିଥି ହେଲେ କସ ହୋଇ । ଏ କଥା କହିବା ବୁଝାଇ ॥
ଗୃହରେ ଅତିଥି ମିଳିବ । ହରଷେ ତାହାକୁ ପୁଜିବ ॥
ଅତିଥି ଉପବାସ କଲେ । ଧର୍ମ ନ ରହେ ତାର ଭଲେ ॥
ଦୁଧ ତଣ୍ଡୁଳ ଫଳ ଜଳ । ଯେ ଅବା ଥିବ ନିଜ ଆଳ ॥
ତାହାଙ୍କୁ ସୁଖରେ ଦେଇଣ । ସନ୍ତୋଷ କରିବ ଯେ ପୁଣ ॥
ଅନ୍ନ ଭୋଜନ ଯେବା ଦେବ । ତହିଁର ପୁଣ୍ୟ କେ ଲେଖିବ ॥
କୋଟି ଅଶ୍ୱମେଧର ଫଳ । କୋଟିଏ ତୀର୍ଥ କରି ତୁଲ ॥
ଅତିଥି ଉପାସ କରାଇ । ଯେ ଗୃହେ ଅନ୍ନ ଭୁଞ୍ଜେ ଯାଇ ॥
ଜଳ ଖାଇଲେ ମଦ୍ୟ ତୁଲ । ଗୋମାଂସ ଖାଇଲେ ଯେ ଭଲ ॥
ଗୃହରେ ଧର୍ମ ଯେତେ ଥାଇ । ଗୁପ୍ତ କରିଣ ଗୃହୁଁ ଯାଇ ॥
ଏ ଯେନ ଅତିଥି ସେବିବ । ଏ କଥା ଅନନ୍ତ କହିବ ॥

କୁଟୁମ୍ବଜନ ଅନ୍ନ ଦେଲେ । ଗୃହାଙ୍କି ଫଳ ଲଭେ ଭଲେ ॥
ଶୁଣ ହେ ପବନ ମକୁନ୍ଦ । କହିବା ତହିଁ ଭଲ ମନ୍ଦ ॥
ଦରିଦ୍ର କୁଟୁମ୍ବ ଆସିଣ । ସୁଖୀ କୁଟୁମ୍ବ ମିଳେ ପୁଣ ॥
ଏହାକୁ ସନ୍ତୋଷେ ରଖିବ । ଏ ପୁଣ୍ୟ ମୁଖେ କେ କହିବ ॥
ଶ୍ରୀ ଗୀତାଗ୍ରନ୍ଥେ ପରମାଣ । ଯେତ୍ଥି ଯେ ପୁଣ୍ୟ ନାହିଁ ପୁଣ ॥
ଗୋହତ୍ୟା ବ୍ରହ୍ମହତ୍ୟା ଦୋଷ । ବିଶୁଳୀ ମାତା ରଡଦୋଷ ॥
ସୁରା ପାନର ଦୋଷ ପାଇ । କୁଟୁମ୍ବ ନିବାରଣ କରଇ ॥
ଯେବେ ଅରଜ ଧନ ଥିବ । ଦରିଦ୍ର କୁଟୁମ୍ବ ରଖିବ ॥
ବନ୍ଧୁ କୁଣିଆ କଥା କହ । ଫିଟିବ ଅମ୍ଭର ସନ୍ଦେହ ॥
ଭଲ ପଚ୍ଛର ସନ୍ଧମାନ । ମୁକୁନ୍ଦ ଅନନ୍ତ ଦ'ଜଣ ॥
ଝିଅର ଘରୁ ବନ୍ଧୁମାନ । ପୁଅର ବନ୍ଧୁ ଯେ ଗମନ ॥
ମାତାର ଅଂଶ ଯେ ଆସଇ । ପିତାର ବନ୍ଧୁ ଯେ ମିଳଇ ॥
ଲେଖାଯୋଖାରେ ବନ୍ଧୁମାନ । ଯେ ଅବା ମିଳିବ ଭୁବନ ॥
ହରଷ କରି ପଚାରିବ । ଆଶ୍ୱାସି ବଚନ କହିବ ॥
କନ୍ଥ ବା ଧନ ସେ ମାଗିଲେ । ମିଳିଲେ ଦେବ ତାକୁ ଭଲେ ॥
ନ ଥିଲେ ପୁଣ କାହୁଁ ଦେବ । କପାଇଁ ପାପ ଏ ଲାଗିବ ॥
କୁଣିଆ ବନ୍ଧୁଙ୍କୁ ନିରାଶ । କରନ୍ତି ଯେବଣ ମନୁଷ୍ୟ ॥
ଅଗ୍ନିରେ ତାର ଧନ ନାଶ । ବନ୍ଦ ନିଅନ୍ତି ରାଜବଂଶ ॥
ଚଉର୍ଯ୍ୟ ମୁଖେ ଧନ ପାଇ । ଉପାୟେ କଲେ ନ ପୂଜଇ ॥
ଗୁରୁ ବୈଷ୍ଣବ ମାତା ପିତା । ଗୃହରେ ଅତଥି ମିଳନ୍ତା ॥
ବନ୍ଧୁ ଦରିଦ୍ର ଯେ ସୋଦର । ଯେ ଦୟା କରନ୍ତି ହୃଦର ॥
ଏହାଙ୍କ ଅଂଶମାନେ ପୁଣ । ଅକାଳେ ନୁହନ୍ତି ମରଣ ॥
ଦୁର୍ଭିକ୍ଷମାନ ଯେ ପଡ଼ିଲେ । ମରିଣ ନ ଯାନ୍ତି ସେକାଳେ ॥
ସେ ଜନ ଅଂଶ ବଂଶ ଥାନ୍ତି । ସଂସାରେ କ୍ରୀଡ଼ା ସେ କରନ୍ତି ॥
କୃପଣ ନିରାଶ ଯେ ଜନ । ଅକାଳେ ନାଶ ଯାନ୍ତି ଜାଣ ॥
ଶୁଣ ମୁକୁନ୍ଦ ହେ ଅନନ୍ତ । ତୁମ୍ଭର ପିତା ଭଗବନ୍ତ ॥

ତୁମ୍ଭର ପିତାମାନେ ପୁଣ । ନରଗ ନୁହନ୍ତି ଯେ ଜାଣ ॥
ଏଣୁ ତୁମ୍ଭର ଅଂଶମାନେ । ମଞ୍ଚରେ ଥିବେ ଏ ଯତନେ ॥
ଯୋକାଏ ଦନ ଯଶ ଥିବ । ଏ ପୁଣ୍ୟବଳେ ପାପ ଯିବ ॥
ଏହୁ ବଚନ ମନେ ଧର । ସସାର ନୁହଇଟି ଚର ॥
ସ୍ତ୍ରୀଯା ପୁଅ ଝିଅ ବାପ । ମାତା ବନ୍ଧୁ ଆପଣ ରୂପ ॥
ପାଣିଫୋଟକା ପ୍ରାୟେ ହୋଇ । ପବନେ ହୋଇ ନାଶଯାଇ ॥
ବୃକ୍ଷର ଫଳ ପ୍ରାୟେ ହୋଇ । ପାଚଲେ ଦେହ ଝଡ଼ିଯାଇ ॥
ପୁରୁଣା ବସନର ମତ । ଛିଣ୍ଡିଲେ ଲୋଡ଼ା ନୁହେ ସେ ତ ॥
ଏହା ବୁଝିଣ ସାଧୁଜନ । ମିଳିଲେ ଦ୍ୟନ୍ତି ଅନ୍ନ ଦାନ ॥
ଚଦ୍ୱଶ ଗୋପାଳ ହେ ଶୁଣ । ଗୋବିନ୍ଦ ନାମକୁ ଶୁଣିଣ ॥
ଏ ଖୋଳ କରତାଳ ଧରି । ଆନନ୍ଦେ ବୋଲ ହରି ହରି ॥
ତେବେ ପାଇବ ସୁଖ ମନ୍ଦି । ତୁମ୍ଭଙ୍କ ଦୁଃଖ ଆଉ କାହିଁ ॥
ଗୋବିନ୍ଦ ବଣିଜ ଯେଜଣ । ସସାରେ କର ଯେ ଭ୍ରମଣ ॥
ସୁଖ ସ୍ଥାନରେ ବସୁଥିବ । ଦୁଃଖ ସ୍ଥାନକୁ ତେଜି ଯିବ ॥
ଏ ନବଦ୍ୱୀପା ପୃଥ୍ୱୀ ହୋଇ । ଗୋବିନ୍ଦ ସ୍ଥାନ ଏ ଅଟଇ ॥
ତୁମ୍ଭେ ଏଥିରେ କ୍ରୀଡ଼ା କର । ଏ ଗୃହ ଦଗରେ ଯେ ଫେର ॥
ପୂର୍ବ ପଶ୍ଚିମ ଏ ଉତ୍ତର । ଦକ୍ଷିଣ ଗୃହ ପରକାର ॥
ଭଗତଜନର ଏ ଘର । ସସାର କୃଷି ତାହାଙ୍କର ॥
ଭକ୍ଷ ତାଙ୍କର ମୂଳଧନ । ଅଧିକ କସ ପ୍ରୟୋଜନ ॥
ଅଧିକ ପ୍ରହ୍ଲାଦେ ଦେଲେ । ଗରବେ କୃଷ୍ଣ ନ ଚିହ୍ନିଲେ ॥
ଏଣୁ ସେ ବର ମାଗି ଛଇଁ । ଅଳପେ ଦେବୁ ସ୍ୱବଗ୍ରାହୀ ॥
ଏ କଥା ଦୃଢ଼ ସତ୍ୟ ଧର । ଅଚ୍ୟୁତ ଆଜ୍ଞା ଶିରେ କର ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟଖଣ୍ଡେ ମାତୃ
ପିତୃ ଭକ୍ଷୁଜନ ପୁଜନେ ନାମ ପଞ୍ଚମ ପଟଳ ।

## ଷଷ୍ଠ ପଟଳ

ଶ୍ରୀ ଗୁରୁଦେବ ଆଜ୍ଞା ଦଅ । ପ୍ରହ୍ଲାଦର ବର କହ ॥
ଶୁଣ ହେ ସୁଜନ ମୁକୁନ୍ଦ । ସୁସାଧୁ ପବନ ଆନନ୍ଦ ॥
ଉତ୍ଥାନ ବାଳକ ଗୋବିନ୍ଦ । ସୁଦାମ ଯାଦବ ହେ ବନ୍ଦ ॥
ଗୁରୁ ବଚନ ପ୍ରତିପାଳି । ସେବିଲ ମନ ଚିତ୍ତେ ଭଲି ॥
ଗୋପାଳ କୁଳକୁ ତାରିଲ । କଳିରେ କଥା ବୁଝାଇଲ ॥
ଭଗତ ମୁକତ ବିସ୍ତାରି । ମନରେ ବିସ୍ମୟ ପସରି ।୬।
ମନର ସଂଶୟ ଫିଟିଲା । ତୁମ୍ଭର ଜନ୍ମ ଦୁଃଖ ଗଲା ॥
ପ୍ରହ୍ଲାଦର ଜନ୍ମ ଶୁଣ । କହିବା ଠିକ ଭାଷା ପୁଣ ॥
ପ୍ରହ୍ଲାଦକୁ ବର ଦେଲେ । ସ୍ୱର୍ଗରେ ଇନ୍ଦ୍ର ତାକୁ କଲେ ॥
ଅନେକ କୃଷ୍ଣ ବିସ୍ତାରଣ । କହିଲେ ବ୍ରହ୍ମ ପରମାଣ ।୧୦।
ପ୍ରହ୍ଲାଦର ମନେ ଦୁଃଖ । ଇନ୍ଦ୍ର ପଣରେ ନାହିଁ ସୁଖ ॥
ଇନ୍ଦ୍ର ପଣକୁ ତେଜି ଆସି । ଦ୍ୱାରକା ପୁରେ ସୁଖେ ବସି ॥
କୃଷ୍ଣର ଗଣ ଯେତେ ଥିଲେ । ପ୍ରଭୁଙ୍କ ସମ୍ମୁଖରେ କହିଲେ ॥
ତକ୍ଷଣେ ପ୍ରଭୁ ଯେ ଉଠିଣ । ସଙ୍ଗତେ ଘେନି ସର୍ବ ଜନ ॥
ପ୍ରହ୍ଲାଦକୁ ଦଣ୍ଡବତ । ବହୁତ କଳାସିବ କ୍ରତ ॥
ମନରେ ବିଚାର କରିଣ । ଉତ୍ତ କରିବ ଏହୁକ୍ଷଣ ॥
ଜାଣିଣ ଭଗତର ମନ । କହନ୍ତି ଶ୍ରୀ ମଧୁସୂଦନ ॥
ତୁମ୍ଭର ଲଲାଟରେ ପୁଣ । ଶ୍ରୀହରି ମନ୍ଦର ଲକ୍ଷଣ ॥
ଆମ୍ଭକୁ ଆମ୍ଭେ ଦଣ୍ଡବତ । ତୁମ୍ଭେ ନ କର ଦୁଃଖ ଚିତ୍ତ ॥
ଏପରେ ଅନ୍ୟ ବର ମାଗ । ଦେବଇଁ ଉତ୍ତମ ଯେ ଭୋଗ ॥
ସ୍ତୁତି କରିଣ ଭକ୍ତ କହି । ଏ ବର ମାଗୁଅଛୁ ମୁହିଁ ॥

---

୬-୨—ବସର, ଗ ।

ତୁମ୍ଭ ଭଗତ ଯେତେ ଜନ । ଦୁଃଖୀ ହୋଇଣ ଥିବେ ସ୍ଥାନ ॥
ତୁମ୍ଭ ଚରଣେ ଚିତ୍ତ ଦେଇ । ତୋ ଗୁଣ ଗାଇ ଦିନ ନେଇ ॥
ଦିନ ବଞ୍ଚିବେ ଦୁଃଖେ ସୁଖେ । ନ ପଡ଼ି ମାୟା ମୋହ ଦୁଃଖେ ॥
ଶୁଣିଣ ଭଗତ ବଚନ । କହନ୍ତି ପ୍ରଭୁ ଭଗବାନ ॥
ତୁମ୍ଭ ଆମ୍ଭର କଥା ଥିବ । ଏହି ବରକୁ ମନେ ଭାବ ॥
ଯେତେ ଭଗତ ଯେତେ ସ୍ଥାନେ । ଥିବେ ଯେ ଆମ୍ଭର ଭଜନେ ॥
ଲେଖି କରଣ ପଢ଼ି ଦେବୁ । ସମ୍ପଦ ମୋହକୁ ଏଡ଼ିବୁ ॥
ଆବର କଥା ଏକ ଶୁଣ । ମୋ ଭକ୍ତ ଯେତେ ଛନ୍ତି ଗଣ ॥
ସମ୍ପାଶ୍ରି ଜନଙ୍କର ଘରେ । ବିଶ୍ରାମ କରିବେ ସୁଖରେ ।୬୦।
ସେ ମୁଖେ ବର ଦେବେ ଯେତେ । ପ୍ରାପତ ହୋଇବ ତୁରିତେ ॥
ଧନ ଜନ ଯେ ପଣ ମାନ । ଭୋଗ କରିବ ସେହୁ ଜନ ॥
ମୋହର ସତ୍ୟ ଅଙ୍ଗୀକାର । ଶୁଣ ହେ ହିରଣ୍ୟ କୁମର ॥
ଯେ ଭକ୍ତ ଦୁଃଖୀ ହୋଇଥିବେ । ସେବିଲା ଜନେ ସୁଖୀ ହେବେ ॥
ଅମାବାସ୍ୟା ସଂକ୍ରାନ୍ତ ଦିନ । ଦ୍ୱାଦଶୀ ପୌର୍ଣ୍ଣମୀ ଭୋଜନ ॥
ଭଗତ ମୁଖେ ଅନ୍ନ ଦେବ । ଏ ବର ତାହାଙ୍କୁ ଫଳିବ ॥
କାରଯ ଅକାର୍ଯ୍ୟ ଶ୍ରାଦ୍ଧରେ । ଭକତ ଭୋଜନ ଯା ଘରେ ॥
ସଂସାରେ ଧନେ ହେବେ ସୁଖୀ । କେବେହେଁ ନୁହନ୍ତି ସେ ଦୁଃଖୀ ॥
ତୀର୍ଥ ବ୍ରତକୁ ଭକ୍ତ ଯାଇ । ଅଥବା ବାଟରେ ମିଳଇ ॥
ଏକାଳେ ଅନ୍ନ ବସ୍ତ୍ର ଦେଲେ । ସୁଖୀ ହୁଅନ୍ତି ସେହୁ ଭଲେ ॥
କ୍ଷୁଧା ପିପାସା ବେଳେ ପୁଣ । ମୋ ଭକ୍ତ ସନ୍ତୋଷ କରଣ ॥
ଶାନ୍ତ କରନ୍ତି ଯେଉଁମାନେ । ସୁଖ ଲଭନ୍ତି ଧନ ଜନେ ॥
ଭକତ ମୋତେ ସମର୍ପିଣ । ପଛେଣ କରଇ ଗ୍ରହଣ ॥
ଦୂରୁ ଆସିଣ ଭକ୍ତ ପାଶ । ମୁଁ ତାହା କରଇ ଯେ ଗ୍ରାସ ॥
ସର୍ବଙ୍କ ପ୍ରାପ୍ୟେ ମୁଁ ଜାଣଇ । ଯେ ଭକ୍ତ ଯେ ଭାବେ ପୂଜଇ ॥
କେ ଅବା ଏକ ଅଙ୍ଗେ ଥାଇ । କେ ଅବା ଦିଅଙ୍ଗେ କରାଇ ॥
କେ ଅବା ପାଞ୍ଚ ସାତ ମିଳି । କେ ଅବା ଶତେ ଯେନ କେଳି ॥

ଯେ ଭକ୍ତ ଯେତେ ସମ୍ଭାଳଇ । ଲେଖିଣ ପଢ଼ି ମୁଁ ଦଅଇ ॥
ଶୁଣ ହେ ପ୍ରହଲ୍ଲାଦ ଦାସ । ସତ୍ୟ ବଚନ ଏ ପ୍ରକାଶ ॥
ତୁମ୍ଭଙ୍କୁ ଏହି ବର ହେଉ । ସଦ ସ୍ତବରେ ଧନ ରହୁ ।୫୦।
ତୁମ୍ଭ ଭଗତମାନେ ପୁଣ । ରହିବେ ସଦ ସ୍ତବେ ଶୁଣ ॥
ସଂସାରେ ପ୍ରାଣୀ ଧନ ଯେତେ । ଅନ୍ତର କୋଠ ଏ ସମସ୍ତେ ॥
କୋଠ ଧନକୁ ତୁମ୍ଭେ ମାଗି । ଭୁଞ୍ଜିଣ ହେବ ସୁଖ ଭୋଗୀ ॥
ଖୋଳ କର୍ତ୍ତାଳ ତୁଳ ମାଳ । ଏ ଭେଖ ଘେନିଣ ଗୋପାଳ ॥
ଉଦର ଭିଖ ମାଗି ପୋଷ । ପୂର୍ବ ପଶ୍ଚିମ ବୃତ ଦେଶ ॥
ସମ୍ପଦ ମଦେ ସୁଖ ନାହିଁ । ଧନରେ ପ୍ରାଣୀ ଭୁଲି ଯାଇ ॥
ପଣରେ ପ୍ରାଣୀ ହୋନ୍ତି ମତ୍ତ । ଜନରେ ମତ୍ତ ଗରବନ୍ତ ॥
ଏ ରସେ ତୁମ୍ଭ ମନ ନାହିଁ । ବୈରାଗୀ ଅଟ ବାର ଭାଇ ॥
ସଂସାରେ ତୁମ୍ଭେ ସୁଖେ ଖେଳ । ଶୁଣ ହେ ବାରଜି ଗୋପାଳ ॥
ପ୍ରଭାତୁ ସ୍ୱାହ୍ୱାନ କରିବ । ଶିଶୁ ରୂପକୁ ସ୍ମରିବ ।୬୦।
ଦ୍ୱିତୀୟ ପ୍ରହର ସ୍ୱାହ୍ୱାନ । କୈଶୋର ରୂପକୁ କର ଧ୍ୟାନ ॥
ସନ୍ଧ୍ୟାରେ ସ୍ୱାହ୍ୱାନ କରିଣ । ଅବାଢ଼ ରୂପକୁ ଚିହ୍ନିଣ ॥
ପ୍ରଥମ ପ୍ରହର ରାତ୍ରେଣ । ଭଜନ କର ମନ୍ତ୍ର ଗୁଣ ॥
ଦ୍ୱିତୀୟ ପ୍ରହର ରାତ୍ରେଣ । ମନ୍ତ୍ରକୁ ଗୁଣିବ ମନେଣ ॥
ତୃତୀୟ ପ୍ରହର ବସିବ । ସମାଧ ରୂପକୁ ଧ୍ୟାଇବ ॥
ତୃତୀୟ ପାନ୍ହାନ୍ତ ପ୍ରହରେ । ସୁମର ବସ ଯେ ହୃଦରେ ॥
କୃଷ୍ଣର ରସ କଥା ମାନ । କରିବ ହୃଦରେ ଗାୟନ ॥
ଶଙ୍ଖ ଶିଙ୍ଘା ବେଣୁ ମୁରଲୀ । ଖୋଳ କର୍ତ୍ତାଳେ ସର୍ବେ ମିଳି ॥
ମାର୍ଦ୍ଦଳ ତାଳ ଡମ୍ଫ ବୀଣା । ଖଞ୍ଜଣି ସରୁ ମାଦଳଣା ॥
ବିବିଧ ରସ ବାଦ୍ୟମାନ । କରିବ ରସରେ ଗାୟନ ।୭୦।
ଅଷ୍ଟ ପ୍ରହର ଗୀତମାନ । କୃଷ୍ଣର ଯେତେ କ୍ରୀଡ଼ାସ୍ଥାନ ॥
ସେ ଅପସରମାନ ଜାଣି । ଗାୟନ କରୁଥିବ ପୁଣି ॥
ଶ୍ରୀରାଧ କୃଷ୍ଣ ପଦେ ଧ୍ୟାନ । ଶ୍ରୀ ବୃନ୍ଦାବନେ ଦେଇ ମନ ॥

ଦ୍ୱାଦଶ ବନକୁ ସୁମରି । ଯମୁନା ଗୋବର୍ଦ୍ଧନ ଗିରି ॥
ଚୌରାଶୀ ସବୁ ସିଦ୍ଧସ୍ଥଳ । ଷୋଳ ସହସ୍ର ଗୋପମେଳ ॥
ଚୌଷଠି ଗୋପୀଙ୍କ ଚରଣ । ଅନନ୍ତ ଗୋପାଳ ଧାରଣ ॥
ଏହାଙ୍କ ଲୀଳା ଗୁଣମାନ । କହୁଣଥିବ ରାତ୍ରଦିନ ॥
ତର୍କ ପାଷାଣ୍ଡ କଥା ଯେତେ । ଅଭ୍ୟାସ ନ କରିବ ଚିତ୍ତେ ॥
ମଦ୍ୟ ମାଂସକୁ ଯେ ତେଜିବ । ମାଦକ ଦ୍ରବ୍ୟ ନ ଭକ୍ଷିବ ॥
ଧୂମ ନ ଭକ୍ଷିବ ମୁଖେଣ । ତେଜିବ ଅପୁ ଗଞ୍ଜା ପୁଣ । ୮୦ ।
କଳିରେ ହେବ ବଡ଼ମ୍ବଣା । ସର୍ବେ ଭକ୍ଷିବ ଜଣେ ଜଣ ॥
ସମସ୍ତେ ସୁରାପାନ କରି । ଗୁରୁ ଗୌରବକୁ ଯେ ହରି ॥
ଦେବୀର ପୂଜା ଯେ କରିବେ । ମାଉସୀ ପିଉସୀ ହରିବେ ॥
ଏଥିରେ ଯେଉଁ ଜନ ଥିବେ । ବିରଜା ଦାଢ଼ ସେ ପଡ଼ିବେ ॥
ଏହଟି ଦେବୀ ବୋଦା ଜାଣ । ଖପରେ ଏହୁ ହେବେ ହାଣ ॥
ମିଛୁଆ ମାଛୁଆ ଯେତେକ । ବସର ଗଞ୍ଜାରେ ମାଇକ ॥
ବିରଜା ଦେବୀ ଅଙ୍ଗ ଏହୁ । ବହୁତ ବଢ଼ିବେ ଏ ମହୁ ॥
ସସାରେ ଧନ ଯେ ଖଗେଣ । ମଳିଣ ଥିବେ କୁଗ୍ରାସେଣ ॥
ଶୁଣ ହେ ବାରଟିଆ ଦାସ । କହିଲୁ ଭବିଷ୍ୟ ପ୍ରକାଶ ॥
ତୁମ୍ଭ ନମସ୍ତେ ଗ୍ରନ୍ଥସାର । ରଖିଣଥିବ ତୁମ୍ଭେ ଘର । ୯୦ ।
ଏ ଗ୍ରନ୍ଥମାନ ଅବା ଶୁଣି । ଧରିବେ ଏକ ଏକ ପ୍ରାଣୀ ॥
ଧରିଲେ ଜନ ଯେ ବହନ । ନ ଧରେ ଅଗାନ୍ତ ସେ ଜନ ॥
ଏ ଗ୍ରନ୍ଥ ଗୁପତେ ପଢ଼ିବ । ଅଶ୍ରଦ୍ଧା ଜନେ ନ କହିବ ॥
ଅଶୁଚି ସ୍ଥାନେ ନ ରଖିବ । ଅଭ୍ୟାସେ ନିତ୍ୟେ ପଢୁଥିବ ॥
ଅଚ୍ୟୁତ ବଚନ ପାଳିବ । ସଂସାର ସୁଖ ସେ ଲଭିବ ।
ଏ କଥା ଯେହୁ ଏଡ଼ି ଦେବ । ଅଳପ ଆୟୁଷ ଲଭିବ ॥
ସସାରେ ସୁଖ ଭୋଗ ନାହିଁ । ରୋଗ ବ୍ୟାଧିରେ କ୍ଷୀଣ ହୋଇ ॥
ଗୁରୁ ଭଗତ ଗୀତା ରସ । ଅଚ୍ୟୁତ କରଇ ପ୍ରକାଶ ।୯୮।

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃଷ୍ଣାସ୍ୱଖଣ୍ଡେ ଭକ୍ତବର କଥନେ
ନାମ ଷଷ୍ଠ ପଟଳ ।

——:※:——

# ସପ୍ତମ ପଟଳ

ଗୁରୁ ପରେ ପରମ ଗୁରୁ ଯେ ଅଟ ତୁମ୍ଭେ ।
ଆମ୍ଭ ଛାର ଅଧମ ପଚାରୁ ମନ ଦମ୍ଭେ ॥
ଅନନ୍ତ ମୁକୁନ୍ଦ ଦାସ ବାଳକ ଯେ ଶିଷ୍ୟ ।
ବସ୍ତ୍ରଦାନ କେମନ୍ତ କହିବା ଏଥି ରସ ॥
ସନ୍ଧ ଯେ ବସନ୍ଧ କଥା ମନେ ରଖିଥାଅ ।
କଥାଏ କଥାଏ କରି ପଚାର ହେ ପୁଅ ॥
ବସ୍ତ୍ରର କେମନ୍ତ କଥା ତାହା ତ କହିବା ।
ବଚାର ଗୁଣିଲେ ସିନା ଫଳସ୍ତ ଫେଡ଼ିବା ॥
ଆମ୍ଭେମାନେ ଖୋଲ ତାଳ ଗାୟନ କରିବୁ ।
ଯେଉଁ ଜନ ନ ଭଜିବ ତାଠାକୁ ନ ଯିବୁ ॥
ବଷ୍ଟ ଯେ ମନ କଳ୍ପନା ମହୋତ୍ସବମାନ ।
ଶୁଦ୍ଧ ଶ୍ରାଦ୍ଧ ବଟାଳ ଯେ ରାଜାର ଭେଦନ ॥
ଏହି କଥାମାନଙ୍କେ ବସ୍ତ୍ର ଯେତେ ପୁଣ ଦେବ ।
ଏଥିର ଯେ ପାପ ପୁଣ୍ୟ କେମନ୍ତ ଖଣ୍ଡିବ ॥
ଶୁଣ ହେ ଗୋପର ପୋଏ ବସ୍ତ୍ର ଦାନ କଥା ।
ବସ୍ତ୍ର ଦାନ ଦିଅନ୍ତି ଯେ ଯେତେ ସାମରଥା ॥
ଶୁକ୍ଳ ବସ୍ତ୍ର ଦେଲେଣ ଏକ ଫଳ ହୋଇ ।
ମଠା ବସ୍ତ୍ର ଦେଲେ ପୁଣ ଦୁଇ ଫଳ ପାଇ ॥
ପାଟ ବସ୍ତ୍ର ଦେଲେ ପୁଣ ତିନ ଫଳ ହୋସ୍ତେ ।
କମଳ ଲୋଷା ଯେ ଦେଲେ ଚାରି ଫଳ ପାଏ ।୧୦ ।
ଧର୍ମ ମୋକ୍ଷ ଅର୍ଥ କାମ ଚାରି ବସ୍ତ୍ରେ ସ୍ଥାନ ।
ଏ ବସ୍ତ୍ର ଯେ ଦିଅନ୍ତି ସେ ଧନ୍ୟ ତା ଜୀବନ ॥
ଅନ୍ନ ବସ୍ତ୍ର କ୍ଷୀର ଦାନ ଯେ ଜନ ଦିଅଇ ।
ଦେବେ ତାକୁ ସ୍ତୁତି କରେ ସ୍ୱର୍ଗପୁରେ ଥାଇ ॥

ଦେଲ୍ଲ ଲୋକ ଲଭଇ ତ ଏତେ ପୁଣ୍ୟ ଫଳ ।
ଯେଦଲ୍ଲ ଲୋକ ସ୍ୱ ଗତି ଏଥିରେ ସୁଫଳ ॥
ମହୋତ୍ସବଠାରୁ ବସ୍ତ୍ର ଯେମନ୍ତ ପାଇବ ।
ନରେ କୃଷ୍ଣ ମନ୍ତ୍ର ବସି ଗୃହରେ ଗୁଣିବ ॥
ବିଶ୍ୱଘରଠାରୁ ବସ୍ତ୍ର ପାଇଲେକ ପୁଣ ।
ମନ୍ତ୍ରରାଜ ଜପ ଯେ କରିବ ଦିବାସ୍ୟେଣ ॥
ଶ୍ରାଦ୍ଧଘର ଠାରେ ଯେବେ ବସ୍ତ୍ରମାନ ପାଇ ।
କୃଷ୍ଣ ମନ୍ତ୍ର ଜପ କଲେ ପାପ ନ ଲାଗଇ ॥
ମନ କଲପଣା ଠାରେ ବସ୍ତ୍ର ଯେବେ ଦେବ ।
ରାଧା କୃଷ୍ଣ ମନ୍ତ୍ର ପ୍ରାତଃକାଳେ ସୁମରିବ ॥
ଚଣ୍ଡାଳ ଘରେଣ ବସ୍ତ୍ର ଯେବେ ପୁଣ ଦେଇ ।
ଅଣକ୍ଷର ମନ୍ତ୍ର ଜପେ ପାପ ନାଶ ଯାଇ ॥
ଶୁଦ୍ଧଘରମାନଙ୍କରେ ବସ୍ତ୍ର ଯଦି ଦେବ ।
ଶୂନ୍ୟ ଯେ ଭଜନ ମନ୍ତ୍ର ସନ୍ଧ୍ୟାରେ କରିବ ॥
ଏତେଠାରୁ ବସ୍ତ୍ର ଯଦି ପାଇବ ହେ ତୁମ୍ଭେ ।
ଆଶାସ୍ତ୍ରୀଜନଙ୍କୁ ଦେବ କହୁଅଛୁ ଆମ୍ଭେ ।୮୦।
ଗୁରୁ ବୈଷ୍ଣବ ଯେ ରଙ୍କ ବ୍ରାହ୍ମଣ ଆସିବ ।
ଏମାନେ ମାଗିଲେ କିଛି ତାଙ୍କୁ ଯାଚଦେବ ॥
ଏମାନେ ହରଣ ହେଲେ ପଞ୍ଚ ପାପ ପାଇ ।
ଗୋରୁହତ୍ୟା ବ୍ରହ୍ମହତ୍ୟା ବିଶୁଳି ଲାଗଇ ॥
ସୁରାପାନ ମାତୃ ଯେ ହରଣ ପାଇ ଦୋଷ ।
ଏ ପଞ୍ଚ ପାତକେ ଯେ ହୁଅନ୍ତ ପରବେଶ ॥
ଏହାଙ୍କୁ ହରଣ କଲେ ନ ବଢ଼ଇ ଅଂଶ ।
ଅକାଳ କାଳ ପଡ଼ିଲେ ବଂଶ ଯାଇ ନାଶ ॥
ଦରିଦ୍ର ହୋଇଣ ତାଙ୍କୁ ବସ୍ତ୍ର ନ ମିଳଇ ।
ଯେ ଯାହା ଦେଇଣଥାଇ ଆଗେ ଥାଇ ଧାଇଁ ॥

ପୂର୍ବେ ଦେଇଥିଲେ ପୁଣ ଏ ଜନ୍ମେ ଭୁଞ୍ଜଇ ।
ଏ ଜନ୍ମେ ଦେଇଣଥିଲେ ଆର ଜନ୍ମେ ପାଇ ॥
ପୂର୍ବେ ତୁମ୍ଭେ ଦେଇଥିଲ ଏ ଜନ୍ମେ ଭୁଞ୍ଜିଲ ।
ଆର ଜନମକୁ ତୁମ୍ଭେ ସମ୍ବଳ ବାନ୍ଧିଲ ॥
ତୁମ୍ଭ ଅମ୍ଭ କଥା ଯେ କଳିରେ ଥିବ ରହି ।
ତୁମ୍ଭ ଅଂଶ ଅନ୍ଧାର ଫେଟିବ ଏହା ଗାଇ ॥
ଦୀନ ଅଚ୍ୟୁତର କଥା କରୁଥିବ ସାର ।
ଗୁରୁଭକ୍ତି ଗୀତା ପଢ଼ ପାପକୁ କୁଠାର ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟଖଣ୍ଡେ ବସ୍ତ୍ର ଦାନ
କଥନେ ନାମ ସପ୍ତମ ପଟଳ ।

## ଅଷ୍ଟମ ପଟଳ

ମାୟା ଜଡ଼ ପାଶକୁ ଶ୍ରୀଗୁରୁଦେବ ଗତି ।
ବାରଜି ଗୋପାଳଙ୍କର ଯେଣବାକ ସ୍ତୁତି ॥
ପବନ ବସ୍ତ୍ର ଯାଦବ ମୁକୁନ୍ଦ ଅନନ୍ତ ।
ବାଳକ ସୁଦାମ ଯେ ଆନନ୍ଦ ଯାଦବତ ॥
ମଥୁରା ଯେ ବୃନ୍ଦାବନ ଗୋବିନ୍ଦ ଉତ୍ପତ୍ତିଆନ ।
ବନତ କରି କହୁଛୁ କହି ପୁଣ୍ୟଥାନ ॥
ଜାତେସାର ଦାସମାନେ ଶୁଣ ଆମ୍ଭ ବାଣୀ ।
ଅମ୍ଭର ଏ ପଞ୍ଚଶାଖା ତୁମ୍ଭେ ଅ ଅ ଶୁଣି ॥
ରାମ ଦ୍ରୁଅ ଧର୍ମ ବଳ୍ପ ଚନ୍ଦ୍ର ପାଞ୍ଚଜଣ ।
ଦକ୍ଷିଣ ଚନ୍ଦ୍ରକୁମାର ରାମ ମନେ ଘେନ । ୫ ।
କୁମାର ରାମ ଯେ ନିରଞ୍ଜନ ଯେ ବେହେରା ।
ବିପ୍ର ଗୋବର୍ଦ୍ଧନ ବୃଣିକ ଶ୍ୟାମଦାସ ସାରା ॥
ପାଞ୍ଚଦାସ ସାତଦାସ ବାରଦାସ ଶୁଣ ।
ଅଚ୍ୟୁତ ମିଶି ପଚିଶ ଗୁରୁ ଦୀକ୍ଷା ଗୁଣ ॥

ପଚଶୁ ପର୍ଣ୍ଣଶ ଯେ ପର୍ଣ୍ଣଶୁ ଶହେ ହୁଏ ।
ଶହେରୁ ଲେଖିଲେ ସହସ୍ରେ ଗୋପପୋସ୍ଥେ ॥
ଏମନ୍ତେ ଷୋଳ ସହସ୍ର ଅଚ୍ୟୁତର ଗୁଣ ।
ଥାନମାନଙ୍କରେ ତୁମ୍ଭେ କରିବ ଭ୍ରମଣ ॥
ସଂସାରର ଜନମାନେ ଦଅନ୍ତି ଯେ ଥାନ ।
କେ କହିପାରିବ ମୁଖେ ତାହାଙ୍କର ପୁଣ୍ୟ । ୧୦ ।
ବାହାରେ ଆସନ ଦେଲେ ଏକ ଫଳ ହୋଇ ।
ବୃକ୍ଷତଳେ ବାସ କଲେ ଦୁଇ ଫଳ ପାଇ ॥
ବାହାର ଘରରେ ଦେଲେ ତିନି ଫଳ ହୋଇସେ ।
ଭିତର ଗୃହେ ରଖିଲେ ଚାରି ଫଳ ହୋଇସେ ॥
ଏ ଚାରି ଥାନର କଥା କହ ଗୁରୁଦେବ ।
ଥାନର ଯେ ଭଲ ମନ୍ଦ ଆମ୍ଭଙ୍କୁ କହିବ ॥
ଭକ୍ତ ଜନ ଭକ୍ତ ରେଣୁ ବାହାରେ ରହିଲା ।
ଅବଶେଷ ଭଜନ ତ ସେହିଠାରେ ହେଲା ॥
ସେ କୁଟୁମ୍ବ ଥାଇ କରି ନ କଲେ ଦର୍ଶନ ।
ଶ୍ରଦ୍ଧା ମତେ କେବା ଦେଖେ ବାହାରେ ଆସନ ।୧୫।
ପୁତ୍ର ଦାର ବନ୍ଧୁଜନେ କରିବେ ଦର୍ଶନ ।
ଗୃହରେ କରିଣ ଥିବ ଉତ୍ତମ ଯେ ସ୍ଥାନ ॥
କୃଷ୍ଣ ଭକ୍ତମାନେ ବସି କରିବେ ଭଜନ ।
ଗୃହ ଜନ ଦର୍ଶନରେ ପାପ ଯେ ମୋଚନ ॥
ଏଣୁକରି ଗୁରୁଙ୍କୁ ଉତ୍ତମ ସ୍ଥାନ ଦେବ ।
ବୈଷ୍ଣବ ଦେଖିଲେ ଗୁରୁ ପରାୟେ ପୂଜିବ ॥
ଉତ୍ତମ ଆସନ ଦେବ କୃଷ୍ଣର ସମାନେ ।
ଉତ୍ତମ ପାତ୍ରରେ ଜଳ ଆଣିବ ସୁମନେ ॥
ସଂସାରେ ଯେମନ୍ତ ଗୁରୁ ରୂପ ଯେ ନ ଥାନ୍ତି ।
ଅନ୍ଧକାର ହୋଇ ପ୍ରାଣୀ ଭ୍ରମିଣ ମରନ୍ତି ।୨୦।

କାହୁଁ ସେ ଜାଣନ୍ତେ ପ୍ରାଣୀ ନିସ୍ତାରଣ ବାଟ ।
ଅକାରଣେ ନାଶ ଯାନ୍ତି ସେ ପ୍ରାଣୀର ଘଟ ॥
ଅନ୍ଧକାର ଘରେ ଯେସନ୍ତେ କିଛି ନ ଦିଶଇ ।
ଦୀପ ଗୋଟି ଜଳିଲେ ସେ ସବୁ ଦୃଶ୍ୟ ପାଇ ॥
ସେହି ଦେହ ଗୋଟି ଯେ ଅଟେ ଅନ୍ଧାରର ଘର ।
ଶ୍ରୀଗୁରୁ ଅଟନ୍ତି ଦୀପ ଏଭବ ସଂସାର ॥
ତାଙ୍କ ମନ୍ତ୍ର ଗୁଣମାନ ଶୁଣି ହେରୁ ହେଲି ।
ହେରୁ ପାଇବାରୁ କେତେ ଗୁଣ ଦୃଶ୍ୟ ହେଲା ॥
ଜନମ ହୋଇଲେ ପ୍ରାଣୀ ଅକାରଣେ ନାଶ ।
ଗୁରୁ ସେବା କଲି ପ୍ରାଣୀ କାରଣେ ପ୍ରବେଶ ॥
ଗୁରୁ ସେବା କରିବାକୁ ସର୍ବେ ନ ପାରନ୍ତି ।
ଜଗତରେ କେତକ ଶିଷ୍ୟ ଗୋଟିଏ ସେ ହୋନ୍ତି ॥
ବାରଟିଆ କାର୍ତ୍ତିକଆ ତୁମ୍ଭେ ବାର ଦାସ ।
ଗୁରୁ ସେବା କଲ ତୁମ୍ଭେ ଗୁଣ୍ଡି ଉପଦେଶ ॥
ଯେଉଁ ଜନମାନେ ଗୃହେ ଦିଅନ୍ତି ଯେ ସ୍ଥାନ ।
ସେ ଜନମାନେ ଲଭିଲେ ଉତ୍ତମ ତ ପୁଣ୍ୟ ॥
ସେ ଜନମାନେ କେମନ୍ତ ଗତି ଫଳ ପାଇ ।
ଏଥିର ସଂଶୟ ପୁଣ ଦେବ ଗୁରୁ କହି ।୩୦।
ବାହାରେ ମନ କପଟେ ଦେଲେଣ ଯେ ଥାନ ।
ପଶୁ ଜନ୍ମ ଲଭିଣ ସେ ବୁଲନ୍ତି ଯେ ବନ ॥
ଗୃହରେ ଆସନ ଦେଲେ ଗୋଲୋକରେ ବାସ ।
ରାଧା କୃଷ୍ଣ ସେବା କରି ପାଏ ପଉରୁଷ ॥
ଯାହାର ନ ଥିବ ଗୃହ ନାହିଁ ତାର ଦୋଷ ।
ଥିବା ଲୋକ ନିବାରଣରେ ପାପରେ ପ୍ରବେଶ ॥
ଭକତ ଯେଉଁ ସ୍ଥାନରେ ନାମ ଗୁଣ ପାଇ ।
କୋଟି କୋଟି ବଂଶ ତାର ଉଦ୍ଧାର ହୁଅଇ ॥

କେତେ ଜନ୍ମର ତ ପାପ ହୋଏ ତାର କ୍ଷୟେ ।
ଶ୍ରୀ ଗୁରୁ ଦର୍ଶନେ ପାପ ଦୁଷ୍କୃତ ଯାଏ ।୩୫।
ଶୀତକୁ ଯେସନେ ଖରା ତୃଷାକୁ ଯେ ଜଳ ।
ବୈଷ୍ଣବ ଗୁରୁ ଦର୍ଶନେ ଖଣ୍ଡେ ଅମଙ୍ଗଳ ।।
ତୁମ୍ଭେ ହେ ଚରଣ ଦାସ ମଠମାନଙ୍କରେ ।
ଉତ୍ତମ କରଣ ଗୃହ ରଖିବ ଭିତରେ ।।
ଏକ ବା ବଖୁରା ଦୁଇ ବଖୁରା ବା ଘନ ।
ଯତନ କରଣ ଥିବ ଗୃହର ପତନ ।।
ପତି ପତ୍ନୀ ଥିଲେ ତ ସହନେ ସେବା କରି ।
ପତି ଯେ ନ ଥିଲେ ସେବା କରିବ ଯେ ସ୍ତ୍ରୀ ।।
ଗୃହ ଧର୍ମମାନ ସିନା ସ୍ତ୍ରୀ ରକ୍ଷା କରେ ।
ସ୍ତ୍ରୀ ଧର୍ମ ନ ରଖିଲେ ବଂଶ ନାଶ ତାରେ ।୪୦।
ପତି ପତ୍ନୀ ସୁଚରିତ୍ରେ ଗୁରୁସେବା କରି ।
ସେ ସ୍ତ୍ରୀଙ୍କ ଲକ୍ଷ୍ମୀ ପୁଣ ଥାଆନ୍ତି ଆବରି ।।
ସେ ସ୍ଥାନରେ ବସିଣ ଯେ ଚରଣ ଗୋପାଳ ।
ପ୍ରାଣୀମାନଙ୍କର ତହିଁ ଖଣ୍ଡ ଅମଙ୍ଗଳ ।।
ବାରଟିଆ ଦାସ ସାର ମୁକୁନ୍ଦ ଅନନ୍ତ ।
ପଞ୍ଚଶାଖା ମଧ୍ୟେ ସାର ରାମ କୃଷ୍ଣ ଭକ୍ତ ।।
ସପ୍ତଶାଖା ମଧ୍ୟେ ନିରଞ୍ଜନ ଦେଖିଣ ତ ।
ଏହି ଛଡ଼ ଗୋପାଳେ ମନରେ ଧରି ତତ୍ତ୍ୱ ।।
ଗୋପାଳ ଘରମାନଙ୍କେ କରିବ ଯେ ଥାନ ।
ସୁଦର୍ଶନ ମନ୍ତ୍ର ଗୋଟି କରିବ ଭଜନ ।୪୫।
ସ୍ଥିର ସ୍ଥିର ଧଇଲେ ଯେ ଆଠ ହେବ ତୁଲ ।
ତଳରେ ବସିବ ପୁଣି ନିଗୁଣ ଅମୂଲ୍ୟ ।।
ଉପରେ କପିକେତନ ବାନା ଯେ ଉଡ଼ିବ ।
ପଦ୍ମବୀଜ ରମାବୀଜ କାମ ଯେ ବସିବ ।।

ଗୋପୀଜନ ବଲ୍ଲଭସ୍ୱ ମନ୍ତ୍ର ମୂଳ ନାମ ।
ଏହୁ ଷର ବସିଲେ ଯେ ମନ୍ତ୍ରଙ୍କ ଉତ୍ତମ ।।
ଏହୁ ମନ୍ତ୍ର ଜପ କରି ଆନ ଦୋଷ ହର ।
ଗୋପାଳ କୁଳରେ ତୁମ୍ଭେ ସୁଖରେ ବିହର ।।
ଗୋପାଳଙ୍କ ଘରେ ଯେତେ କାଳମାନ ଥିବ ।
ଏ ମନ୍ତ୍ର ଜପିଲେ ସେହୁ ଛାଡ଼ି ପଳାଇବ ।୫୦।
ବାରଟିଆ ଦାସମାନେ ସଂସାର ଗୃହରେ ।
ଏହୁ ମନ୍ତ୍ର ଜପିବ ଯେ ଦେଶ ଗ୍ରାମ ପୁରେ ।।
ଗୋପାଳ ପାଟଣା ପୁରେ ଏହୁ ଜପ କରି ।
ଆବର ତ ଖୋଳ କରତାଳ ଅଛ ଧରି ।।
ଭୁବନ ମଙ୍ଗଳ ଧୂନ ଅଛୁ ତୁମ୍ଭେ କର ।
ଯମ ଯେଉଁ ଧୂନ ଡରେ ଆଉ କାହା ଛାର ।।
କାଳମାନେ ଯମର ଯେ ଅଟନ୍ତି ଡଗର ।
ଅକାଳମାନେ ଅଟନ୍ତି ତାଙ୍କ ପରିବାର ।।
ଭୂତ ପ୍ରେତ ଡାଏଣୀ ଯେ ଗୃହ ପୁଣ ବାଧୀ ।
ଯମରଗଣ ହୋଇଣ ସଂସାରରେ ଖେଦ ।୫୫।
ରଜା ଯାକୁ ଡରଇ ପରଜା କେଉଁ ଛାର ।
ସୁଦର୍ଶନ ଚକ୍ରକୁ ଯେ ଡରନ୍ତି ଅସୁର ।।
ମହା ବଳବନ୍ତ ଅଟେ ସୁଦର୍ଶନ ରୂପ ।
ସୁଦର୍ଶନ ଧରିଛନ୍ତି ସଂସାରଏ କୃପ ।।
ବଳଭଦ୍ର ଅନନ୍ତ ବିରାଟ ସୁଦର୍ଶନ ।
ସିଦ୍ଧାଶ୍ରିସ୍ଥା ଶ୍ରୀନା ଶେଷଦେବ ଆଠ ସ୍ଥାନ ।।
ଅଠ ବଳେ ବଳବନ୍ତ ସେହୁ ରାମ ନାମ ।
ସୁଦର୍ଶନ ନାମ ଧରି ଉଦ୍ଧାର ଅଧମ ।।
ମୁକୁନ୍ଦ ଅନନ୍ତ ରାମ ଭ୍ରୁଥ ନିରଞ୍ଜନ ।
ଦକ୍ଷିଣ ଚନ୍ଦ୍ର ଯେ ଛଡ଼ଜଣ ମନେ ଘେନ ।୬୦।

ଶ୍ମଶ୍ର ଶୁଦ୍ଧ ଶ୍ରାଦ୍ଧ ଯେ ଶ୍ମଶାଲ ସ୍ଥାନମାନ ।
ଗୃହ ପରବେଶ ମନ କଲପନା ସ୍ଥାନ ॥
ଏ କାର୍ଯ୍ୟରେ ସ୍ଥାନମାନ ଦେବେ ଯେଉଁ ପ୍ରାଣୀ ।
ଚଣ୍ଡ ମନ୍ତ୍ର ଜପିବ ଯେ ଲକ୍ଷେକ ସେ ଚଣି ॥
ଚଣ୍ଡ ମନ୍ତ୍ର ନ ଜପିଲେ ପାପ ନ ଛେଦବ ।
ଗୃହସ୍ଥଙ୍କ ନ ତାରଣ ଯେ ଆପଣେ ନାଶିବ ॥
ଅଚ୍ୟୁତର ବଚନ ଯେ ଧର ଗୋପସୁତ ।
ଗୁରୁଭକ୍ତ ଗୀତା ଯେ ତୁମ୍ଭଙ୍କୁ ହେବ ହସ୍ତ ॥
ତୁମ୍ଭ ଅଂଶମାନ ଏହି ଗ୍ରନ୍ଥ ଯେ ପଢ଼ିବ ।
ଆଲୁଅ ହୋଇବ ତାଙ୍କୁ ସମସ୍ତ ଦିଶିବ । ୬୫ ।
ହରେକୃଷ୍ଣ ବୋଲଣ ଯେ ଗୃଜନ ହୋଇବ ।
ସେ ଗୃଜନ କାଳେ ଏହି ଗ୍ରନ୍ଥ ପ୍ରକାଶିବ ॥
ନଅକ୍ଷରେ ନାମ ଥିବ ଗୋପସୁତ ହୋଇ ।
କଛୁଦନ ଗୁପତେଣ ପଢ଼ିବ ଯେ ସେହି ॥
ତାହାଙ୍କ ଠାବରୁ କଛୁ ପାଇବେ ଗୋପାଳ ।
ଗୁପତେଣ ଥିବ ଗ୍ରନ୍ଥ ଚନ୍ଦ୍ରାଙ୍ଗୀର କୂଳ ॥
ଆପଣେଣ ଅବଧୂତ ରୂପରେ ପ୍ରବେଶ ।
ପ୍ରବେଶ କରବେ ପୁଣ କାଠୁଆର ଦେଶ ॥
ବ ଅକ୍ଷରେ ନାମ ହେବ ତାର ଅଂଶେ ରହି ।
ତହିଁ ପୁଣ ହୋଇବ ଯେ କଛୁ ଗୋପ୍ୟ ହୋଇ ।୭୦।
ତହୁଁ ଚଳଯାଇ ଯେ ଶର୍ଗବୀ ଚନ୍ଦ୍ର ଦେଶେ ।
ଗୁପତ ରହିବ ଗ୍ରନ୍ଥ ସେ ଭୂମିର ପାଶେ ॥
ଗୋପ୍ୟ ଗ୍ରନ୍ଥ ଭକତ ଯେ ନ କରିବ ପୁଣ ।
ଏହା ଯେ କରିବ ଦୁଃଖ ପାଇବ ଆପଣ ॥
ପ୍ରାଣୀମାନେ ମନ୍ତ୍ରଶୂନ୍ୟ ତନ୍ତ୍ରଶୂନ୍ୟ ଥିବେ ।
ଯନ୍ତ୍ରଶୂନ୍ୟ ଜ୍ୟୋତିଶୂନ୍ୟ ଅବାଢ଼େ ନଥିବେ ॥

ଛନ୍ଦ୍ୟାଶୂନ୍ୟ ଧ୍ୟାନଶୂନ୍ୟ ହୋଇଥିବ ଘଟ ।
ରସ ଗୁଣ କଛୁ ସାଧି ହୋଇବେ ମୂର୍ଖ ॥
ଏ ଗୁଣମାନ ନ ଧରି ଶାସ୍ତ୍ରକୁ ନପଢବେ ।
କାହିଁ ଏହା ପାଇବେ ସେ ଗୁରୁ ସେବା ଦେବେ ॥
ସେହି ଗୁରୁ କୋଟିକେ ଗୋଟିଏ ଅବା ପାଇ ।
ମନ୍ତ୍ରଶିକ୍ଷା ଗୁରୁ ପୁଣ ବହୁତ ମିଳଇ ॥
ଅଷ୍ଟଗୁଣ ଜାଣି କରି ଯେହୁ ଗୁରୁ ହେବ ।
ସେହି ଜନମାନଙ୍କୁ ତ ଗୁରୁ ସେ ବୋଲିବ ॥
ଅଷ୍ଟଗୁଣ ନ ଜାଣିଣ ଯେ କରନ୍ତି ଶିଷ୍ୟ ।
ସେହି ଶିଷ୍ୟମାନେଟି ଅଭାପଡ଼ିମ୍ନ ଦୃଶ୍ୟ ॥
ଗୁରୁଶିଷ୍ୟ ପଥର ଯେ ନାବରେ ବସନ୍ତି ।
ଅନ୍ଧକୁ ଅନ୍ଧ ଯେସନେ ପଥ ବଢ଼ାବନ୍ତି ॥
ଏଣୁକରି ଅଷ୍ଟଗୁଣ କରିବ ସାଧନ ।
ଉତ୍ତମ ଗୁରୁ ପୁଚ୍ଛିଣ ଦେବ ତାକୁ କର୍ଣ୍ଣ ॥
ଦଦରା ନାବେ ବସିଲେ ବୁଡ଼ି ମରେ ନର ।
ବଢ଼ ନାବେ ବସିଲେ ଜଳରୁ ହୋଏ ପାର ॥
ଧ୍ୟାନ ଅଚ୍ୟୁତର କଥା ଅଟଇ ଏ ସାର ।
ଗୀତା ଭାଗବତେ ବେଦ ପୁରାଣେ ପଚାର ।(୮)।
ଇତି ଶ୍ରୀ ଗୁରୁଭକ୍ତି ଗୀତା କୂଟସ୍ଥ ଖଣ୍ଡେ ଗାନ ପୂର୍ଣ୍ଣ
କଥନେ ମନ୍ତ୍ରପ୍ରଚ୍ଛିଲ ନାମ ଅଷ୍ଟମ ପଟଳ ।

---

## ନବମ ପଟଳ

ଶ୍ରୀଗୁରୁ ଗୋସାଇଁ କହି କଥାଏ ପଚାରି ।
ପ୍ରାଣୀମାନେ ଧନ ପୁତ୍ର ଥାନ୍ତି ଯେ ଅଘୋର ॥
ମନରେ କଳପୁଥାନ୍ତି ଥିବ ମୋର ଅଂଶ ।
ସର୍ବଦା କି ରହିଥାନ୍ତି ତାହାଙ୍କର ବଂଶ ॥

ଏଥିରୁ ଥୋକାଏ ସନ୍ଥ ବସନ୍ଥ ପଗ୍ଭର ।
ପ୍ରାଣୀମାନେ ଥୋକାଏସେ ତ ଆଆନ୍ତି ଅବୋଧ ॥
ମୋହର ବୋଲଣ ଧନ ନ ବଅନ୍ତି ପୁଣ ।
ନ ଦଅନ୍ତି ଗୁରୁ ଯେ ବୈଷ୍ଣବ ମୁଖରେଣ ॥
ଆପଣେ ନ ଭଞ୍ଜି ସୁଖେ ଦୁଃଖେ ରୁଖା ଖାଇ ।
ପ୍ରାଣୀଙ୍କ ନଗଣ କର ନ ଦେଇ ନ ଖାଇ ॥
ସଦଂଢାକ ରହୁଥାଇ ଧନ ପୁଣ କୂଳ ।
ଏଥକୁ କରୁଣା କର ଗ୍ଭଜ୍ଞୁ ମନମଳ ॥
ଶୁଣ ହେ ଅନନ୍ତ ବସ୍ତ୍ର ମୁକୁନ୍ଦ ଆନନ୍ଦ ।
ପ୍ରାଣୀମାନେ ମିଛରେ ପଞ୍ଜଣ ହୋନ୍ତି ଅନ୍ଧ ॥
କ୍ଷୁଧା ନ ସହୁଣ ଯେବେ ପେଟର କାରଣେ ।
ଅନୁକ୍ଷଣେ ଧାଇଁ ଥାଇ ପେଟର ପୋଷଣେ ॥
ପେଟର ପୋଷଣେ ପୁଣ କାମର ପ୍ରବଳ ।
ସ୍ତ୍ରି ସ୍ତ୍ରୀ ଅବୋଧଣ ତ କରଇ ଗୃହ ସ୍ଥଳ ॥
ପୁତ୍ର ଜାତ ହୋଇଲେ ତ ମୋହ ମଦେ ମାତ ।
ପୁତ୍ରର ଜନ୍ମନ୍ତେ ମୁହିଁ ସମ୍ପିବ ସମ୍ପତ୍ତି । ୧୦ ।
ଏମନ୍ତେ ଝସର ପୋକ ପରାଏ ମରଇ ।
ଗୁରୁପାଶେ ପଶିଣ ଯେ ପଥ ନ ଶିଖଇ ॥
ଅମଢ଼ା ପଥରେ ଗମି ପାଏ ବଡ଼ ଦୁଃଖ ।
ବୃଦ୍ଧକାଳେ ଧନ ପୁତ୍ର ନ ଦଅନ୍ତି ସୁଖ ॥
ସ୍ୱେରର ପରାଏ କଣ ଛଡ଼ାଇ ନଅନ୍ତି ।
ତରୁଣ କାଳେ ତ ପଥ ରଖିଣ ନ ଥାନ୍ତି ॥
ବୃଦ୍ଧକାଳେ ବଳ ବୁଦ୍ଧି ନାଶଯାଇ ତାର ।
କି ସେବା କରି ପାରିବ ଶ୍ରୀଗୁରୁ ପଯ୍ୟର ॥
ତରୁଣ କାଳରେ ଧନ ଅରଜୁଣ ଥିବ ।
ଏହୁ କାଳେ ଗୁରୁ ସେବ ପଥ ପଗ୍ଭରିବ ॥

କୁଟୁମ୍ବ ନ ଥିବା କାଳେ ଅନ୍ନ ବସ୍ତ୍ରମାନ ।
ଶ୍ରୀ ଗୁରୁ ବୈଷ୍ଣବ ମୁଖେ ଦେବ ସେ ସ୍ୱଜନ ॥
ଏହାଙ୍କୁ ନ ସେବ ଯେବେ ମୂଢ଼ ପଣେ ଥାଇ ।
ଧନ ପଣ ନାଶ କରି ନରକେ ଗମଇ ॥
ଅକାଳେ ଅକାଲ ପଡ଼ି ବଂଶ ଯାଏ ନାଶ ।
ମିଛକୁ ଚିର କରଣ ପ୍ରାଣୀ ଯାନ୍ତି ନାଶ ॥
କାହାର ନ ଥାଇ ଅଂଶ ଆପଣେ ମରଇ ।
ଯାହାର ଯେ ଏକଅଂଶ ବଢ଼ି କରି ଥାଇ ॥
କାହାର ତିନ ପୀଢ଼ିରେ କ୍ଷୟ ଯାଇ କୁଳ ।
ପାଞ୍ଚ ସାତ ପୀଢ଼ିରେ ଯେ ନାଶଯାଏ ମୂଳ । ୨୦ ।

ଧନ କୁଳ ନିଶ୍ଚଳ ଯେ ନୁହଇଟି ସତ ।
ମିଛରେ ଯେ ମରୁଥାନ୍ତି ମୂଢ଼ ଅପଣ୍ଡିତ ॥
ଯୁଗମାନଙ୍କରେ ଯେ ଦୁର୍ଭିକ୍ଷମାନ ପଡ଼ି ।
କେତେ କେତେ ବଂଶମାନ ତହିଁ ଯାନ୍ତି ମରି ॥
ଯୁଗମାନଙ୍କରେ ଯୁଦ୍ଧ ହାଣ ଗୋଳେ ମରେ ।
ଏହା ନ ଜାଣିଣ ପ୍ରାଣୀ ସେ ଧନ ଜନରେ ॥
ଚିର ଯେ ନୁହଇ ଧନ ଆବର ଜୀବନ ।
ଚିର ଯେ ନୁହଇ ପୁଣ ପୁତ୍ର ବନ୍ଧୁ ଜନ ॥
ଚିର ଏକା ଅଟଇ ଯେ ଗୁରୁ ସେବାମାନ ।
ଚିର ଏକା ଅଟଇ ଯେ ଶ୍ରୀକୃଷ୍ଣ ଭଜନ । ୨୫ ।

ଚିର ଏକା ଅଟଇ ବୈଷ୍ଣବ ସେବାଜାତ ।
ଚିର ଏକା ଅଟଇ ହସ୍ତରେ ଯା ଦଅନ୍ତି ॥
ଜପାସୁର ହିରଣ୍ୟ ରାବଣ କଂସବୀର ।
ଏମାନଙ୍କ ଧନ ଅଂଶ କାହିଁଛି ସଂସାର ॥
ବଳି ବେଣୁ ମାନଧାତା ଏମାନଙ୍କ ପଣ ।
ସଂସାରେ କି ରହିଛନ୍ତି ଯୁଗର ଶେଷେଣ ॥

ଶୁଣ ହେ ଅନନ୍ତ ଦାସ ମନେ ହେତୁକର ।
ବାଳକଙ୍କ ଖେଳଘର ପ୍ରାୟେ ମନେଧର ॥
ଦେହ ବନ୍ଧଥିଲେ ବାଳ ଖେଳ କରୁଥିବ ।
ଚର ବୋଲି ଏହା ମନେ କେଭେଁ ନ ଧରିବ ॥
ଗୁରୁ ବୈଷ୍ଣବ ଯେ ସେବ ଗୃହ କରୁଥିବ ।
ଚର ବୋଲି ଧନ ଜନ ମନେ ନ ଘେନିବ ॥
ଥିଲେ ଭଲ ଗଲେ ଭଲ ଦେହ ସମର୍ପିବ ।
ହର ଯାହା ବନ୍ଧଥିବେ ଅବଶ୍ୟ ହୋଇବ ॥
ଧନ ଥିଲେ ପଣ ଥିଲେ ଗୁରୁଙ୍କୁ ପୂଜିବ ।
ପୁତ୍ର ବନ୍ଧୁ ପତ୍ନୀ ଆଦି ଦୋହିତା ଯେ ଥିବ ॥
ସମର୍ପିବ ଗୁରୁ ପାଦେ ମନର ହରଷେ ।
ତାଙ୍କ କଲ୍ୟାଣରୁ ଥିବ ଯେତେ କାଳ ଅଂଶେ ॥
ଗୁରୁ ବଇଷ୍ଣବ ଯେଉଁ ବର ଦେଇ ଯାଏ ।
ସେ ବର ପାଷାଣ ଗାର ପଚ୍ଛେ ଅକ୍ଷୟେ । ୩୯ ।
ତୁମ୍ଭେ ବର ପାଇଲ ଯେ ଶ୍ରୀ ଗୁରୁ ମୁଖରେ ।
କଛି ଦିନ ତୁମ୍ଭ ଅଂଶ ଥିବ ଏ ସଂସାରେ ॥
ସତ୍ୟ ଯୁଗେ ଯୁଗ୍ମ ମଧୁ ପଡ଼ି ନାଶ ଗଲେ ।
ଜପାସୁର ଆଦି କରି କେତେ ପ୍ରାଣୀ ମଲେ ॥
ତ୍ରେତୟା ଯୁଗରେ ଯୁଗ୍ମ ମଧୁ ଯେ ପଡ଼ିଲା ।
ଚଉଦ ଦିନ ଚଉଦ ବରଷ ହୋଇଲା ॥
ରଘୁନାଥ ବନବାସ କଲେ ସେ ଦିନରେ ।
ବାଲୀ ଆଦି ରାବଣ ଯେ ମଲେଟି ଅସୁରେ ॥
ଦୁର୍ଭିକ୍ଷରେ କେତେ କେତେ ଅଂଶ ଗଲେ ନାଶ ।
ପ୍ରାଣୀମାନଙ୍କର କେତେ ନାଶ ଗଲେ ବଂଶ । ୪୦ ।
ଦ୍ୱାପର ଯୁଗରେ ଯୁଗ୍ମ ମଧୁ ଯେ ପଡ଼ିଲା ।
ଗୋପରେ ଶ୍ରୀକୃଷ୍ଣ ଆଠ ବରଷ କଟିଲା ॥

ଆଠ ବରଷରେ ପ୍ରାଣୀ କେତେକ ଯେ ମଲେ ।
କଂସ ଆଦି କରି ଅଷ୍ଟ ମଲ୍ଲ ନାଶ ଗଲେ ॥
ଯଦୁବଂଶ ନାଶ ଗଲେ ସେ ଯୁଗରେ ପୁଣ ।
କାହିଁ ତାଙ୍କ ଦେଖୁଅଛ ଧନ ଜନ ପଣ ॥
ଏହି ରୂପେ ଧନ ଜନ ଚିର ଯେ ନୁହଇ ।
କଷ୍ଟ ଧନ ବଢ଼ିକରି ପୁଣି ନାଶ ଯାଇ ॥
ବାର ଯେ ବରଷ ତେର ଧନ ଯେ ଓଳଏ ।
ଯୁଦ୍ଧମଧ୍ୟ ପଡ଼ିଲେ ଯେ ସେ କାଳ ସମସ୍ତେ । ୪୯ ।
ଖଣ୍ଡା ଚଳାଇ ସହସ ରଜା ଲଭିଲେ ମରଣ ।
ଦୁର୍ଭିକ୍ଷ ବାର ବରଷ ହେଲେ ରଣଭଣ ॥
ଦୁର୍ଭିକ୍ଷ କାଳରେ ପ୍ରାଣୀ ଯେତେ ଗଲେ ମରି ।
କାହିଁ ତାଙ୍କ ରହିଅଛି ଧନଜନ ଶିରି ॥
ଏହା ନ ଜାଣିଣ ପ୍ରାଣୀ ସତ ମଣି ଥାଇ ।
ଦଇବ ସଂଯୋଗେ ପୁଣ ସର୍ବ ନାଶ ଯାଇ ॥
ମାୟା ଅନ୍ଧ ଜଡ଼େ ପଡ଼ି ପ୍ରାଣୀ ମଣେ ସତ ।
ନିରନ୍ତରେ ବୋଲୁଥାଇ ମୋର ଧନ ସୁତ ॥
ଧନ ମଦ ଜନ ମଦ ପଣ ମଦ ପାଇ ।
ବିଦ୍ୟା ମଦ କୁଳ ମଦ କାମ ମଦେ ବାଇ । ୫୦ ।
ଏହି ମଦେ ମାତିକରି ଗୁରୁଙ୍କୁ ନ ସେବେ ।
ଗୁରୁ ପାଶେ ନ ବସଇ ବୈଷ୍ଣବ ନ ସେବେ ॥
ଏ ମଦ ଏଡ଼ିଣ ତୁମ୍ଭେ ଚବିଶ ମହାନ୍ତ ।
ଗୁରୁପାଦେ ସେବ ହେଲ ବୈଷ୍ଣବଙ୍କ ମତ ॥
ଗୁରୁ ସେବା କରିବାରୁ ମନ ନିରମଳ ।
ଗୋଲୋକ ଆୟୁଧ ହେଲ ତୁମ୍ଭ କରସ୍ଥଳ ॥
ଓଡ଼ରାଷ୍ଟ୍ରେ ତୁମ୍ଭର ଯେ କଥା ରହିଥିବ ।
ତୁମ୍ଭର ସକାଶୁ ଗୋପକୁଳ ଉଦ୍ଧରିବ ॥

କଳି ମଧ୍ୟେ ଯୁଗ୍ମମଧ୍ୟ ପଡ଼ିବ ଯେ ପୁଣ ।
ବୀରକିଶୋର ରାଜା ଯେ ହୋଇଥିବ ଜାଣ ॥
କଳଙ୍କି ଜନମ ହେବେ ସେ କାଳେ ଗୋସାଇଁ ।
ମକୁନ୍ଦ ରାଜନ ଦେବ ଏକ ଖ୍ଲାଶହି ॥
ବ୍ରାହ୍ମଣ ଯେ ବିଷ୍ଣୁ ମିଶ୍ର ଅପୂର୍ବିକ ଥିବ ।
ଆପଣେ ଜନମ ସେହୁ ଅଟେ ବସୁଦେବ ॥
ବାସୁ ଯେ ପଲେଇ ବୋଲି ଗୋପାଳ ତା ସଙ୍ଗ ।
ବିଷ୍ଣୁ ମିଶ୍ର ସଙ୍ଗେ ହୋଇଥିବ ଅଙ୍ଗସଙ୍ଗ ॥
ଦେଇ ଯେ ବ୍ରାହ୍ମଣୀ ବୋଲି ବିଷ୍ଣୁ ମିଶ୍ର ନାରୀ ।
ଯଶୋଦା ବୋଲଣ ବାସୁ ପଲେଇ କୁମାରୀ ॥
ଦୁଇ ସ୍ତ୍ରିରୀ ଅଟନ୍ତି ଯେ ସଙ୍ଗାତ ସେ ଜାଣ ।
ବିପ୍ର ଘର ଗୋପ ଘର ନାହିଁ ଭିନ୍ନାଭିନ୍ନ ॥
ଦେଈର ଗର୍ଭରେ ପ୍ରଭୁ ଜନମ ହୋଇବେ ।
ବରଷ ଦିନରେ ମାତା ପରାଣ ଛାଡ଼ିବେ ॥
ଦୁଇ ଯେ ବରଷ ଗୋପାଳୁଣୀ ଯେ ପାଳିବ ।
ବିଷ୍ଣୁ ମିଶ୍ର ପୁଣ ଯେ ପରାଣ ଛାଡ଼ିଯିବ ॥
ଛଡ଼ ବରଷକଠାରେ ଗୋପାଳୁଣୀ ହତ ।
ସପତ ବରଷଠାରେ ପଲଲ ପଶ୍ଚିମ ॥
ସପତ ବରଷେ ନଇରୃତକୁ ଗମନ ।
ତହିଁ ନଦୀକୂଳରୁ ବିଜୟେ ଭଗବାନ ॥
ସମଲ ଗ୍ରାମ ଯେ ପୁଣ ତେଜି କରି ହରି ।
ଆତ୍ମା ତପ କରିବେ ସୁବର୍ଣ୍ଣ କୂଟ ଗିରି ॥
ଶ୍ରୀ ନୀଳ କନ୍ଦରେ ଖେଚ ଭୂଞ୍ଜି ଣ ଗୋସାଇଁ ।
ତପସ୍ୟା କରୁଣ ଥିବେ ଅନନ୍ତ ଯେ ଭୂଇଁ ॥
ଚିରକାଳ ତହିଁରେ ହେ କରି ଆତ୍ମା ଧ୍ୟାନ ।
କଳଙ୍କି ରୂପକୁ ସୁଖ ଲଭିବ ଯତନ ॥

ଏମନ୍ତ ହୋଇଣ କୃଷ୍ଣ ଲୁଚିକରି ଥିବେ ।
ପ୍ରାଣୀମାନେ ଅତି କଷ୍ଟେ ଦିନ ଯେ ବଞ୍ଚିବେ ॥
ରଘୁନାଥ ବନେବାସ କୃଷ୍ଣ ଗୋପେ ଜାତ ।
କଳଙ୍କି ରୂପ କଳିରେ ହୋଇବ ଗୁପତ ॥
ଯୁଗକୁ ଯୁଗ ଏ ଲୀଳା କରନ୍ତି ଗୋସାଇଁ ।
ନଷ୍ଟ ପ୍ରାୟେ ଲୀଳା କରି ଭାଙ୍ଗି ଗଢ଼ୁଥାଇ ॥
ହଟିଆ ନାଗର ହଟ୍ଟା ଜାଣଇ ଅପାର ।
ଗଢ଼ି ନ ଭାଙ୍ଗିଲେ ସମ୍ଭାଳନ୍ତା କେ ସଂସାର ॥
କଳି ଶହେ ବରଷ ଯେ ପ୍ରାଣୀମାନେ ରହୁ ।
ମୁଁ କାର ଗରବେ ପ୍ରାଣୀ କାହୁଁ ନ ଚହ୍ନଇ ॥
ଗଢ଼ି ନ ଭାଙ୍ଗିଲେ ପୃଥ୍ୱୀ କାହିଁ ଠାବ ହୋନ୍ତା ।
ଏଣୁକରି ନାଶ କଲେ କରମ କରତା ॥
ବୀର କିଶୋରର କାଳେ ଉତ୍କଳ ଯେ ଦେଶ ।
ପଶ୍ଚିମ ଦିଗରେ ଘୋଡ଼ା ହୋଇବ ପ୍ରବେଶ ॥
ଦକ୍ଷିଣ ଦିଗୁଁ ଅସିବେ ତେଲଙ୍ଗା ଯେ ଜାଣ ।
ଉତ୍ତର ଦିଗରେ ନଗି ଥିବେ ଯେ ପଠାଣ । ୭୫ ।
ସେ କାଳେ ଦଶ ବରଷ ଦେଢ଼ମାସ ଲେଖି ।
ପ୍ରାଣୀମାନେ ହୋଇବେ ଅନେକ ଯନ୍ତ୍ରେ ଦୁଃଖୀ ॥
ଦୁର୍ଭିକ୍ଷରେ ଥୋକେ ଜନ ହୋଇବେ ଯେ ନାଶ ।
ହାଣ କାଟରେ ମରିବେ ଅନେକ ମନୁଷ୍ୟ ॥
କାଙ୍କୁ ଯେ ମାଣ୍ଡିଆ ସୁଆଁ କୋଦୁଅ ବାଜ୍ରଙ୍ଗା ।
ଚଢ଼ିଆ ପଥୁରି କରିଥିବେ ଘର ଭଙ୍ଗା ॥
ଶୁଦ୍ଧ ଶ୍ରାଦ୍ଧ ମାନ କେହୁ ନ କରି ପାରିବେ ।
ଥିଲା ପ୍ରଜାଧନ ରାଜା ବନ୍ଧକରି ନେବେ ॥
ଦେଢ଼ କାହାଣ ହୋଇବ ଧାନ ଯେ ଗଉଣୀ ।
ବନ୍ଧଣ ରଖିଣ ଥିବେ କୃପଣ ଯେ ପ୍ରାଣୀ ॥ ୦ ।

ତାହାଙ୍କର ଧନ ପୁଣି ଚୋରକର ନେବ ।
ଦୁଃଖୀ ସୁଖୀ ଦରିଦ୍ର ଯେ ହୋଇବେଟି ସର୍ବ ॥
ଏକା ବସ୍ତ୍ର ପିନ୍ଧିଥିବେ ଦୋସର ଆଉ ନାହିଁ ।
ମଳିଣ ପିନ୍ଧିଣଥିବେ କ୍ଷୀଣ ତନୁ ବହି ॥
କୋଡ଼ିଏ କାହାଣ ହେବ ଭୂମି ମାଣ କର ।
ତରେ ଗ୍ରାମ ଛାଡ଼ି ଯିବେ ଶୂଦ୍ର ଯେତେ ନର ॥
ସେହି ଦନଠାରୁ ଜାଣ ତୁଟିବ ସଂସାର ।
ଗ୍ରାମକେ ଗ୍ରାମକେ ଥିବ ଏକ ଏକ ନର ॥
କୃପଣ ଲୋକ ସେ କାଳେ ମରିବେ ଅପାର ।
ମିଛୁଆ ଜନମାନେ ଯେ ହେବେ ନାରଖାର । ୮୭ ।
ଅଧର୍ମ କରଣ ଗୁରୁ ଦକ୍ଷିଣା ବୁଡ଼ିବ ।
ଏହି ପ୍ରାଣୀମାନେ ଯେ ସେ କାଳେ ନାଶଯିବ ॥
ମାତା ପିତା ଛାଡ଼ି କରି ଗୃହ କରୁଥିବେ ।
ସେହି ଜନ ଅକାଳରେ ନଷ୍ଟସ୍ତ ମରିବେ ॥
ପରେ କଳତ୍ରର କରି ଗୃହ କରୁଥିବ ।
ସ୍ତ୍ରୋଟ ମାରେ ଏକା ନର ଅଂଶ ନ ରହିବ ॥
ଗୋଦଣ୍ଡା ହରଣ ବଣା କୃଷିରେ କରଣ ।
ସେହି ଜନମାନଙ୍କର କୃଷି ଯିବ ନାଶ ॥
ପରସ୍ତ୍ରୀ ହରୁଥିବେ ଯେତେକ ଯେ ପ୍ରାଣୀ ।
ଅଂଶମାନ ତାହାଙ୍କର ନ ରହିବ ପୁଣି । ୯୦ ।
ବହୁତ ଆହାରୀମାନେ ମରିବେ ସେ କାଳେ ॥
ଚତ୍ର ବୃଢ଼କଲ୍ପ ଜନ ତରିବେ ସେ କାଳେ ॥
କଳେ ଚଳେ ଫଳେ ଜଳେ କରିବେ ଆହାର ।
କଳିଯୁଗେ ଦୁଃଖେ ସୁଖେ ପୋଷିବେ ଉଦର ॥
ଅକ୍ଷର ଉକ୍ଷର ଯେ ରକ୍ଷର ନକ୍ଷରେ ।
ଏତେ ଅଂଶ ରହିବେ ତ ସେ କଳିଯୁଗରେ ॥

ମ ଅକ୍ଷର ଢ ଅକ୍ଷର ନକ୍ଷର ପଥରେ ।
ଏତେ ପୀଡ଼ା ରହିବ ତ ଏ କଳିଯୁଗରେ ॥

ମୁକୁନ୍ଦ ଅନନ୍ତ ଦୁହେଁ ସଂଯୋଗ ଧାରଣ ।
ଯାହା ପଚାରିଲ ତାହା ହେତୁ ମନେ ଶୁଣ ॥

ବଇରାଗୀ ଜନ ଯଦ ଯତ ସତ ଧରେ ।
ସେହି ଜନ ସୁଖ ପାନ୍ତି ଏ କଳିଯୁଗରେ ॥

ଗୃହସ୍ଥା କରିଣ ଯଦ ବିଷୟ ଅବର ।
ବିଷୟା ଧନରୁ କିଛୁ ପରମାର୍ଥ କର ॥

ସେହି ଜନମାନେ ଯେ କଳିରେ ପାନ୍ତି ସୁଖ ।
ଏ ହେତୁ ନ କଲେ ପ୍ରାଣୀ ପଛେ ପାନ୍ତି ଦୁଃଖ ॥

ମୁକୁନ୍ଦ ଅନନ୍ତ ବସ୍ତ୍ର ଗୋବିନ୍ଦ ଆନନ୍ଦ ।
ସୁଦାମ ବାଳକ ଛଡ଼ ଗୁରୁ ପଦେ ବନ୍ଦ ॥

କିଛୁଦିନ ତୁମ୍ଭ ଛଡ଼ ଅଂଶ ରହିଥିବ ।
ଖୋଲ କରତାଳ କରି ମାଗିଣ ଖାଇବ । ୧୦୦ ।

ଯେତେଦୂର ଗମିବ ତୁମ୍ଭର ତେତେ ଘର ।
ସଂସାରଜନ ତୁମ୍ଭଙ୍କୁ କରିବେ ଆଦର ॥

ଗୋପାଳ ପୁଅ ଯେ ତୁମ୍ଭ ନାମ ସେ ଅଟଇ ।
ପୁଅଠାରେ ପିତା ମାତା ଆନ କି କରଇ ॥

ସଂସାରେ ଯେତେକ ସ୍ତିରୀ ସର୍ବେ ତୁମ୍ଭ ମାତା ।
ସଂସାରେ ଯେତେ ପୁରୁଷ ଜ୍ଞାନ କର ପିତା ॥

ମାତା ପିତା ପ୍ରାପ୍ତେ ଅନ୍ନ କରିଣ ଖାଇବ ।
ଅକାଳ ଦୁର୍ଭିକ୍ଷ ତୁମ୍ଭଠାବକୁ ନ ଯିବ ॥

ବଣିଜକୁ ଦେଇ ତୁମ୍ଭ ଖୋଲ କରତାଳ ।
ହେତୁ ମନେ ଧର ତୁମ୍ଭେ ବାରଟି ଗୋପାଳ ॥

ଉତ୍ତଥାନ ପବନ ବୃନ୍ଦାବନ ଯେ ମାଥୁରୀ ।
ଯାଦବ ମଧୁ ଯେ ଥିବ ମନେ ହେତୁ କରି ॥
ଅଚ୍ୟୁତ ବଚନ ପାଳି ସଂସାରେ ବିହରି ।
ଗୁରୁଭକ୍ତ ଗୀତା ଗ୍ରନ୍ଥ ଜଗତ ବିସ୍ତରି ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ ଯୁଗ୍ମ ମଧ୍ୟ
ଜଳ ଅ.ଗମ ନାମ ନବମ ପଟଳ ।



## ଦଶମ ପଟଳ

ମୁକୁନ୍ଦ ଅନନ୍ତ ବେନି ପଚ୍ଚରୁଛି ସନ୍ଧି ।
ତତ୍ତ୍ୱ ଗୁରୁ କହିଲ ଯେ ତନ୍ତ୍ର ମନ୍ତ୍ର ଭେଦ ॥
ଦେହାଦର ଗୁରୁ କହ ସଂସାରେ ବଖାଣ ।
ସଂସାରଜନ ଜାଣିବେ ଯେଉଁ ପରମାଣ ॥
ତୁମ୍ଭର କେ ଦେହ ଗୁରୁ କେଉଁ ମନ୍ତ୍ର ଦେଲେ ॥
ଏ କଥା ଜାଣିଣ ଥିବୁ ତୁମ୍ଭ ମୁଖୁଁ ଭଲେ ॥
ଧରମୁ ଭରଥ ତୁମ୍ଭେ ବିଷ୍ଣୁ ଦେବ ଶୁଣ ।
ବଳ ନିରଞ୍ଜନ ଯେ ଦକ୍ଷିଣ ଚନ୍ଦ୍ର ପୁଣ ॥
କମାର କୁମ୍ଭାର ଯେ ବଣିକ ହେତୁ କର ।
ବିପ୍ର ଆଦି କରି ଆତ୍ମ ପୁତ ଦ୍ୱାର ସାର ॥
ମୁକୁନ୍ଦ ଅନନ୍ତ ଯେନ୍ତୁ ପବନ ଉତ୍ଥାନ ।
ଗୋବିନ୍ଦ ଆନନ୍ଦ ବସ୍ତୁ ଶୁଣ ବୃନ୍ଦାବନ ॥
ଯାଦବ ସୁଦାମ ମଧୁ ମଥୁରି ଯେ ବାର ।
ଭ୍ରୁଥ ରାମ ବେନିର ଯେ ଅଟେ ତୁମ୍ଭେ ସାର ॥
ଶୁଣ ଯାହା ପଚ୍ଚରିଲ ହେତୁ କର ମନ ।
ଆତ୍ମର ବିହାର ଉଲକ୍ଷଣା ନିଗ ସ୍ଥାନ ॥

ଚଯଚୋଲା ନଦୀରୁ ଲବଣ ଧାର କୂଳ ।
ଦୀନବନ୍ଧୁ ପିତାଙ୍କର ଭନ୍ଦିରେ ଯେ ଆଳ ॥
ପଦ୍ମା ନାମେ ମାତା ମୋର ସେ ସ୍ଥାନରେ ଘର ।
ବିଦ୍ୟା ପଢ଼ାଇଣ ଥିଲେ ବିପ୍ର ସୁଜ୍ଞବର ॥
ଗ୍ରାମର ପଶ୍ଚିମ ସ୍ୱଗ ଅଶ୍ୱତ୍ଥ ମୂଳରେ ।
ପାଞ୍ଚଗୋଟି ବୃକ୍ଷ ବସିଥିଲ୍ ସେହିଠାରେ ॥
ଅପୂର୍ବ ମୂରତି ଶୋଭା ଗଉର ସୁନ୍ଦର ।
ବିଶ୍ରାମ କଲେକ ଆସି ସେହି ଯେ ସ୍ଥାନର ॥
ପଚ୍ଛରିଲେ ତୁମ୍ଭର ଯେ ମାତା ପିତା କେଉଁ ।
ତାଙ୍କଆଣ ଆମ୍ଭର ଯେ କଥା ରହିଥାଉ ॥
ଆଜ୍ଞା ପାଇ ଗଲି ମୁହିଁ ପିତାଙ୍କର ପାଶ ।
ଦୀନବନ୍ଧୁ ପିତା ମୋର ହୋଇଲେ ପ୍ରବେଶ ॥
ପିତାକୁ ବୋଇଲେ ଏହୁ ବାଳକ ଆମ୍ଭର ।
ହରି ନାମ ଦେବୁ ଆମ୍ଭେ ଶରଧା ମନର ॥
ସନମତ କରି ପିତା ଗୃହକୁ ଚଳିଲେ ।
ହରି ଦୀକ୍ଷା ପୂଜା ବିଧିମାନ ସଜାଡ଼ିଲେ ॥
ବୈଶାଖ ଶୁକଳପକ୍ଷ ଏକାଦଶୀ ତିଥି ।
ସୋମବାର ମାହେନ୍ଦ୍ର ଯେ ଯୋଗ ବାର ସ୍ଥିତି ॥
ହରିନାମ ଦେଲେ ମୋତେ ସେ ଦିନରେ ପୁଣ ।
ପିତା ପଚ୍ଛରିଲେ ପ୍ରଭୁ କିସ ତୁମ୍ଭ ନାମ ॥
କାହିଁ ତୁମ୍ଭ ଘର ବୃତ୍ତି କାହିଁ ତୁମ୍ଭ ସ୍ଥାନ ।
କେଉଁଠାରେ ଏ ବାଳକ କବେ ଦର୍ଶନ ॥
ନୀଳଗିରି ଦକ୍ଷିଣ ଯେ ସମୁଦ୍ର ତଟରେ ।
ଚୈତନ୍ୟ ମଣ୍ଡଳ ବୋଲି ପଚ୍ଛରି ସେଠାରେ ॥
ଆମ୍ଭ ଦରଶନ ହେବ ସେହିଠାରେ ପୂର୍ବ ।
ଆମ୍ଭ ଜନ ବୋଲି ଆମ୍ଭେ ଆଦରିବୁ ଜାଣ ॥

ଆମ୍ଭେ ଅଟୁ ଶଚୀ ସୁତ ଚୈତନ୍ୟ ଠାକୁର
ଶରଧା ବଳାଇ ଆମ୍ଭ ସୁତଠାରେ ଭୋର ॥
ଅନ୍ୟପକ୍ଷେ ନୀଳଗିରି ଠାବରୁ ଅଇଲୁ ।
ଓଡ଼ରାଷ୍ଟ୍ର ଉଦ୍ଧାରଣେ ଏ ପୁତ୍ରକୁ କଲୁ ॥
ଗଉର ବର୍ଣ୍ଣ ଛାଡ଼ିଣ କୃଷ୍ଣବର୍ଣ୍ଣ ହେଲେ ।
ତ୍ରିଭଙ୍ଗି ହୋଇଣ ବଂଶୀ ହସ୍ତରେ ଧଇଲେ ॥
ବେନି ଭୁଜେ ଧଇଲେ ଯେ ଦଣ୍ଡକମଣ୍ଡଳ ।
ଆଉ ବେନି ଭୁଜେ ଅଛି ବାଉଁଶର ହୁଲ । ୨୫ ।
ଅପୂର୍ବ ରୂପ ଦେଖିଣ ପଡ଼ି ପାଦତଳ ।
ସ୍ୱୟଂ କୃଷ୍ଣ ବୋଲେ କହଲ ସୁଭାଗ୍ୟ କର୍ମର ।
ଅପୂର୍ବ ମଟଣାନ୍ନ ପଞ୍ଚା କଲେକ ଭୋଜନ ।
ଏମନ୍ତ ହୋଇଣ ଆମ୍ଭ ଗୁରୁଙ୍କ ଦର୍ଶନ ॥
ହରେକୃଷ୍ଣ ମନ୍ତ୍ର କହି କାମବୀଜ ଦେଲେ ।
କ୍ଲିଂ ବୀଜରେ ରାଧା ମନ ବୁଝାଇଲେ ॥
ଆଦ୍ୟ ନାମ ତୁମ୍ଭର ଅଟଇ ପୁଣ କପ ।
ଏ କଥା କହିବା ହେତୁ ଶୁଣିଥାନ୍ତୁ ଶିଷ ॥
ଆମ୍ଭନାମ ଗୌରହରି ସଂସାରେ ବିହରି ।
କଳିକାଳ ଦେଖିଣ ଯେ ଧଇଲୁ ଏ ଶ୍ୱର । ୩୦ ।
ବଇରାଗ ବେଶ ଧରି ତୋର କଉପୁନି ।
ଆମ୍ଭ ଭେକ ଧରି ସବେ ବିହରି ମେଦିନୀ ॥
ଆବର ଅଚ୍ୟୁତ ତୁମ୍ଭେ ରାହାସ ରଖିବ ।
ଓଡ଼ରାଷ୍ଟ୍ରେ ତୁମ୍ଭର ଯେ କଥା ରହିଥିବ ॥
ଆଜ୍ଞା ଦେଇ ବିଜେକଲେ ଶ୍ରୀ ନୀଳକନ୍ଦର ।
ତାଙ୍କ କରୁଣାରେ ପଦ ସ୍ଫୁରିଲା ଅପାର ॥
ଶ୍ରୀଗୁରୁ ମୋ ଚଇତନ୍ୟ କରୁଣା ଅନନ୍ତ ।
ହେତୁ ମନେ ଧର ତୁମ୍ଭେ ବାର ଗୋପସୁତ ॥

ଆମ୍ଭ ଗୁରୁ ଗୋରା ଗ୍ରନ୍ଦ ରାମ ଆମ୍ଭ ଶିଷ୍ୟ ।
ରାମ ଶିଷ୍ୟ ଅନନ୍ତ ମୁକୁନ୍ଦ ଦୁଇ ଦାସ । ୩୬ ।

ଦୋହାଦ ଗୁରୁ ଈଶ୍ୱର ମନେ ଧରିଥିବ ।
ଉତ୍ତମ ଜନ ଦେଖିଲେ ଏହା ବଖାଣିବ ॥
ଥୋକେ ଲୋକ ଶୁଣିଲେ କରିବେ ଉପହାସ ।
ଏଣୁକରି ମୂଢ଼ ଜନେ ନକରି ପ୍ରକାଶ ।
ଚଇତନ ଆଜ୍ଞା ଧର ଅମ୍ଭ ଆଜ୍ଞା ସାର ।
ରାମ ଆଜ୍ଞା ଶିରେ ଧରି ସଂସାରେ ବିହର ॥
ଟଖୋଲ କରତାଳ ଧରି ରାହାସ ସୁମରି ।
ରାହାସେ ପଶିବ ରାଧା କୃଷ୍ଣ ନାମ ସ୍ମରି ॥
ଗୋପାଲ ମନ୍ତ୍ର ଧରିଣ ଗୋରା ରୂପ ଧ୍ୟାନ ।
ରାହାସ ରଚିବ ଲକ୍ଷ୍ୟେ କରି ବୃନ୍ଦାବନ । ୪୦ ।

ତାଲ ଯେ କୁମୁଦ ବେଲ ଖଦର କାମୋଦ ।
ସାଦ୍ରବ ଖଣ୍ଡିର ଲୋହ ଫଣି ମଧୁ ଭେଦ ॥
ଶ୍ରୀ ଗୋପାଲ ଲୀଳାକୁ ତୁମ୍ଭେ ଧ୍ୟାନ ପଥେ ଧର ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ବିହର ॥
ଗୁରୁ ଆଜ୍ଞା ଶିରେ ଧରି ମୁକୁନ୍ଦ ସନ୍ତୋଷ ।
ଆଜ୍ଞା ଶିରେ ଧରି ତୋଷ ହେଲେ ସର୍ବ ଶିଷ୍ୟ ॥
ଅଚ୍ୟୁତ ବଚନ ହେତୁ ଧର ଗୋପ ପୋଷ୍ୟେ ।
ସଂସାରରେ ଯଶ ରହିଥିବ ହେ ଥୋକାଙ୍କ୍ୟେ ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟଖଣ୍ଡେ ଶ୍ରୀ ଗୁରୁ
ପ୍ରଣାଳୀ କଥନେ ନାମ ଦଶମ ପଟଳ ।

# ଏକାଦଶ ପଟଳ

ନମସ୍ତେ ଗୁରୁଦେବ ନନ୍ଦ । ସନ୍ଥ ସାଧୁ ଯେ ଧରେ ବେଦ ॥
ସୁଜନ ସାଧୁ ବୈଷ୍ଣବନ୍ତ । ବୈରାଗ୍ୟ ମହାନ୍ତ ମହନ୍ତ ॥
ଏ ଆଦି ଲଇକ୍ଷଣ କହି । ଫିଟିବ ମନ ମାୟା ମୋହ ॥
ସତ୍ୟ କହିବ ନିତ୍ୟ ତୁଣ୍ଡେ । ଶାନ୍ତରେ ଥିବ ହୃଦପିଣ୍ଡେ ।
ଦୟା ଯେ କରିବ ହୃଦରେ । କ୍ଷମା କରିବ ଦୋଷୀଠାରେ ॥
ଧର୍ମ କରିବ ଅନ୍ନ ଦେଇ । ଦୁଃଖୀ ଦରିଦ୍ରଙ୍କୁ ଭୁଞ୍ଜାଇ ॥
ଏ ପାଞ୍ଚ ଲକ୍ଷଣ ଯାହାର । ସନ୍ଥ ବୋଲିବା ସେହି ନର ॥
ଏ ପାଞ୍ଚ ଗୁଣ ହୃଦେ ଧରି । ସଂସାରେ ସୁଖେଣ ବିହରି ॥
ସନ୍ଥ ଲକ୍ଷଣ ତୁମ୍ଭଠାରେ । ଅନନ୍ତ ଧର ହେ ହୃଦରେ ॥
ଧାନ ଅଚ୍ୟୁତ କହେ ସାର । ମାୟା ମୋହରୁ ହୁଅ ପାର ॥
ଏ ଖୋଲ କରତାଳ ଧରି । ଆନନ୍ଦେ କୃଷ୍ଣ ନାମ ସ୍ମରି ॥
କୃଷ୍ଣ ମନ୍ତ୍ରକୁ ଜପ କରି । ଶାନ୍ତ କରିବ ଚିତ୍ତେ ସ୍ମରି ॥
ହରେକୃଷ୍ଣ ଯେ ମନ୍ତ୍ର ଜପି । ସତ୍ୟ କହିବ ମୁଖେ ଥାପି ॥
ଠାକୁରାଣୀ ଯେ ମନ୍ତ୍ର ଧରି । କାଳିଁ ରଖିବ ଧର୍ମ କରି ॥
ଗୋପାଳ ସ୍ୱାହା ସେ ମିଶିବ । ଏ ଧର୍ମ କିଛି ଦିନ ଥିବ ॥
ତାରକ ମନ୍ତ୍ର ସୁମରଣ । ଅନ୍ନ ଭୋଜନ ଦେଇ ପୁଣ ॥
ଦୟାରେ ଅଟଇ ଏ ସାର । ଏ ଗୁଣ ବହି ଗୃହ କର ॥
ଯୁଗଳ ମନ୍ତ୍ରକୁ ଗୁଣିମ । ଦୋଷୀର ଦୋଷ କର କ୍ଷମ ॥
ଅନନ୍ତ କହିଲୁ ହେ ତୋରେ । ଏ ବର ଦେଲୁ ହରଷରେ ॥
ବୃନ୍ଦ ଗଙ୍ଗାର ତଟେ ଘର । ବାଲିସ୍ତ ନଗ୍ରରେ ବିହର । ୨୦ ।
ଚାରି ପିଢ଼ି ତ ସୁଖେ ଯିବ । ପାଞ୍ଚ ପିଢ଼ିରେ ଦୁଃଖ ହେବ ॥
ସଂସାରେ ସର୍ବ ଜନ ଦୁଃଖ । ସେଠାରୁ ଆଉ ନାହିଁ ସୁଖ ॥
ଘରରେ କେହି ନ ରହିବେ । ପିତାକୁ ପୁତ୍ର ଯେ ତେଜିବେ ॥

ଗୁରୁଙ୍କ ଖରିଯା ଗ୍ରହିବେ । ପେଟ ନ ପୂରେ ବୁଲୁଥିବେ ।
ପୁତ୍ରକୁ ବିକିବ ଯେ ବାପ । କଳି କାଳରେ ବଡ଼ ତାପ । ୨୫ ।
ପରଜା ଧନ ରାଜା ନେବ । ନିର୍ଦ୍ଦୋଷୀ ହୁଡଦେଣ ମାରିବ ॥
ଗୁରୁଙ୍କ ଶିଷ୍ୟ ଅବିଶ୍ୱାସ । ପିତା ପୁତ୍ରକୁ ଦେବ ବିଷ ॥
ଭାଇ ଭଉଣୀ ରତିରଙ୍ଗ । ମଦିରା ପାନରେ ତରଙ୍ଗ ॥
କେତେ କହିବା କଳି କଥା । ଶୁଣି ଶୁଣିଲେ ବଡ଼ ବ୍ୟଥା ॥
ରାମଚନ୍ଦ୍ରର ଅଂଶ ଯିବ । ମରହଟ୍ଟାର ରାଜ୍ୟ ହେବ । ୩୦ ।
ମଲ୍ଲିକା ହେବ କିଛି ଦିନ । ବ୍ରାହ୍ମଣ ନେବ ମ୍ଲେଚ୍ଛ ସ୍ଥାନ ॥
ଏ ଅନ୍ତେ ଦ୍ୱିଜ ରାଜା ହେବ । କଳଙ୍କି ତେବେ ପ୍ରକାଶିବ ॥
ବୀରକେଶରୀ ରାଜା ଠାରୁ । କଳଙ୍କି ସଂସାର ବିହରୁ ॥
ଏତେ ଧନରେ ନାହିଁ ସୁଖ । ଅନ୍ନ ବସ୍ତ୍ରରେ ପ୍ରାଣୀ ଦୁଃଖ ॥
ଅନନ୍ତ ଦାସ ଗୋପ୍ୟ କର । ଏ ଗ୍ରନ୍ଥ ଗୁପତେ ସୁମର । ୩୫ ।
ପ୍ରକାଶେ ପୁତ୍ର ନାଶ ଯିବ । ଦରିଦ୍ର ନଷ୍ଟ ବ୍ୟାଧି ହେବ ॥
ଥାନ ଭ୍ରଷ୍ଟ ଯେ ଘର ପୋଡ଼ା । ଗୁପତେ ପଢ଼ି ବଂଶ ବଢ଼ା ॥
ଗୁପତେ ନିତି ପଢ଼ୁଥିବ । ସ୍ୱେଗ ମଣୋଦ୍ଧ କିଛି ଦେବ ॥
ଅଚ୍ୟୁତ ବଚନ ଏ ସାର । ଗୁରୁ ଭଗତି ଗୀତା ଧର ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟଖଣ୍ଡେ ପଞ୍ଚ ଲକ୍ଷଣ
ନାମ କଥନେ ଏକାଦଶ ପଟଳ ॥

---

## ଦ୍ୱାଦଶ ପଟଳ

ଏ ଭବ ସମୁଦ୍ର ଅଟଇ । ଗୁରୁ ତହିଁକ ନାବ ହୋଇ ॥
ଉତ୍ତମ ଧର୍ମ ନାମ କହ୍ନ । ଉତ୍ତମ ଜନ୍ମ ଦ୍ୟନ୍ତ ନେଇ ॥
ଏଣୁ ସେ ପ୍ରାଣୀ କୂଳେ ଲଗେ । ନ ପଡ଼େ ଏ ଭବ ତରଙ୍ଗେ ॥
କହ ଶ୍ରୀଗୁରୁ ନିସ୍ତାରଣ । ସାଧୁଙ୍କ କେମନ୍ତ ଲକ୍ଷଣ ॥
ଶୁଣ ପବନ ହେତୁକର । ସାଧୁ ଲକ୍ଷଣ ତୁମ୍ଭେ ଧର ॥

ସୁମନ ସଙ୍ଗେ ଖେଳାକରେ । ବିଷମ ମନରେ ନ ଧରେ ॥
ସୁଜ୍ଞାନେ ସଦା ହେତୁ ଥାଇ । କୁଜ୍ଞାନେ କେଭେ ନ ଗମଇ ॥
ସର୍ବଦା ପୁଷ୍ଟ ଅଙ୍ଗିକାରେ । ମଳିନ ଅଙ୍ଗ ସେ ନ ଧରେ ॥
ସୁବୁଦ୍ଧି ଭାବେ ସଦା ଥାଇ । କୁବୁଦ୍ଧି କେଭେ ନ କରଇ ॥
ସତ୍ୟ ବଚନ ପ୍ରତିପାଳେ । ମିଛ ସେ ନ କହଇ ଭାଳେ । ୧୦ ।

ସବୁ କଥାକୁ ସନମତ । ଶମ ଶାନ୍ତରେ ଧରେ ଚିତ୍ତ ॥
ଭଗବତ ଜ୍ଞାନେ ଧ୍ୟାନ କରେ । ସମାଧି ବସି କେୟାଧ ଧରେ ॥

ଅଣଅକ୍ଷର ମନ୍ତ୍ର ଧର । ସୂକ୍ଷ୍ମ ରୂପ ଧ୍ୟାନ କର ॥
ସୂକ୍ଷ୍ମ ରୂପ ଯେ ଧରଇ । ସାଧୁ ବୋଲିଣ ତାକୁ କହି ।
ପବନ ସାଧୁ ହେତୁ କର । ପବନ ସଙ୍ଗରେ ବିହର ॥
ସୁମନ ସଙ୍ଗେ ବିହରିବ । ଶ୍ୟାମ ପଞ୍ଚାକ୍ଷର ଜପିବ ।
ସୂକ୍ଷ୍ମ ଅଙ୍ଗ କରିଥିବ । ହରେରାମ ମନ୍ତ୍ର ଜପିବ ॥
ସୁବୁଦ୍ଧି ଚିତ୍ତ କରିଥିବ । ଶୂନ୍ୟ ଭଜନ ମନ୍ତ୍ର ଭାବ ॥
ସତ୍ୟ ବଚନ କହୁଥିବ । ହରେକୃଷ୍ଣ ମନ୍ତ୍ର ଜପିବ ॥
ଶାନ୍ତ ସର୍ବଦା ମନେ ଥିବ । ଯେବା ମିଳିବ ତା ଖାଇବ ।

ସାଧୁ ଲକ୍ଷଣ ତୁମ୍ଭ ତହିଁ । ପୂର୍ବ କଲବେ ଆଶା ନାହିଁ ॥
ଷଡ଼ ଲକ୍ଷଣ ସାଧୁଙ୍କର । ଆତ୍ମା ସାଧନେ ତତପର ॥

କାଷ୍ଠୀଣୁ ନଦୀକୂଳେ ରହ । କଟକ କୂଳେ ରଖ ଦେହ ॥
ତୁମ୍ଭର ବଂଶ ନାହିଁ ଅଂଶ । ତୁମ୍ଭେ ତ ନପୁଂସକ ବଂଶ ॥
ମୃଦଙ୍ଗ କରତାଳ ବହ । ହରିନାମ ଗାଇବ ତହିଁ । ୨୫ ।
ଦୀନ ଅଚ୍ୟୁତ ଗୁରୁ ଗୀତା । ଗୋପାଳେ ପଢ଼ ହେବ ହିତା ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟଖଣ୍ଡେ ସାଧୁ ଲକ୍ଷଣ
କଥନେ ନାମ ଦ୍ୱାଦଶ ପଟଳ ॥

---

## ତ୍ରୟୋଦଶ ପଟଳ

କହ ପରମ ଗୁରୁଦେବ । ଶିଷ୍ୟ କେମନ୍ତେ ଉଦ୍ଧରିବ ॥
ନୋହନ୍ତେ ଗୁରୁ ସଂସାରେଣ । ଏ ଜୀବ ହୋନ୍ତା ଅକାରଣ ॥
ଅନ୍ଧାର ଘରେ ଯେସନ୍ତ ପ୍ରାଣୀ । ନ ପାରେ ଧନ ମାନ ଅଣି ॥
ଦୀପ ଲଗିଲେ ସବୁ ପାଇ । ସଂସାରେ ଗୁରୁ ଦୀପ ହୋଇ ॥
ଅନ୍ଧାର ଘରେ ଦୀପ ହୁଅ । ହେତୁ ଦେଇଣ କହିଲ ଥୁଅ ॥
ଶୁଣ ହେ ମକୁନ୍ଦ ସୁଜନ । ତୁମ୍ଭେ ତ କାଷ୍ଠୀଶ୍ୱରେ ଜନ୍ମ ॥
ଜୀବ ନିସ୍ତାରେ ଜାତ ହୋଇ । ଗୋପାଳ ଉଦ୍ଧରିବା ପାଇଁ ॥
ଜନମ ହେଲେ ଉତକଳେ । ତାରିବେ ଅମୋକ୍ଷ ଗୋପାଳେ ॥
ତୁମ୍ଭଙ୍କ ବୃନ୍ଦି ହେବେ ଦାସ । ତୁମ୍ଭର ଯେତେ ଥିବ ଅଂଶ ॥
ସୁଚନ୍ଦେ ସଦା ରହିଥାଇ । କୁତ୍ସିତ କେବେଁ ନ ଧରଇ ॥
ସନ୍ମତ ସବୁଠାକୁ ହୋଏ । କାହାକୁ ଅସମ୍ମାନ ନୋହେ ॥
ସର୍ବଙ୍କ ପ୍ରାଣେ ସର୍ବ ଜାଣି । ଦିଅନ୍ତି ଅନ୍ନ ଜଳ ପାଣି ॥
ଉତ୍ତମ ସୁଜ୍ଞଜନ ଭାଷା । ପ୍ରାଣୀରେ ନ ଧରନ୍ତି ହିଂସା ॥
ବିବେକ ଅଟନ୍ତି ସେ ପୁଣି । ଅବିବେକ ଭାଷା ନ ଭଣି ॥
ଶତ୍ରୁକୁ ମିତ୍ର ପ୍ରାୟେ କରେ । ଦୋଷ ନ ଧରନ୍ତି ମନରେ ॥
ମିତ୍ରଠାବରେ ଅବିଶ୍ୱାସ । କେବେହେଁ ନ ଧରନ୍ତି ଦୋଷ ॥
ଏ ସାତ ଲକ୍ଷଣ ଧର । ମକୁନ୍ଦ ମନେ ହେତୁ କର ॥

ମହାନଦୀର କୂଳେ ଘର । ଢିଗିଲେ ଗ୍ରାମରେ ବିହର ॥
ସୁଚଳେ ସଦା ରହିଥିବ । ଏକା ଅକ୍ଷରକୁ ଜପିବ ॥
ସମ୍ମତ ସବୃଠାକୁ କରି । ପଞ୍ଚ ଅକ୍ଷର ଜପ କରି । ୬୧ ।

ସର୍ବଙ୍କ ଗୁଣ ଧରିଥିବ । ଅଣ ଅକ୍ଷରକୁ ଜପିବ ॥
ତାରକ ମନ୍ତ୍ର ଯେ ଜପିବ । ଉତ୍ତମ ଭାଷା ଯେ କହିବ ॥
ଗୋପାଳ ମନ୍ତ୍ରକୁ ଭଜିବ । ଶବ୍ଦକୁ ସିଦ୍ଧ କରିଥିବ ॥
ଶବ୍ଦକୁ ସିଦ୍ଧ ପ୍ରାୟେ ମଣି । କାମ ଗାୟତ୍ରୀ ଥିବ ଗୁଣି ॥
ଶୁଣ ହେ ସୁଜନ ମୁକୁନ୍ଦ । ଉଦ୍ଧାର କର ଗୋପବୃନ୍ଦ ॥
ଏ କଳିଯୁଗ ବଡ଼ ମନ୍ଦ । ପ୍ରାଣୀ ମାୟାରେ ପଡ଼ି ଧନ୍ଦ ॥
ମନ୍ତ୍ର ଜପ କରି ନ ପାରି । ନ ପାରେ ଧ୍ୟାନ ଲକ୍ଷ୍ୟ କରି ॥
ଶ୍ରୀ ଗୁରୁ ସେବ ନ ପାରଇ । ବୈଷ୍ଣବ ସେବ ନ ପୁଚ୍ଛଇ ॥
ଧରି ନ ପାରଇ ଲକ୍ଷଣ । ନ ଦିଏ ଅନ୍ନ ବସ୍ତ୍ର ମାନ ॥
ନ ପଢ଼େ ବିଦ୍ୟା ଶାସ୍ତ୍ର ପୁଣ । ମାୟାରେ ହୋଇଲେ ରଣଭଣ ॥

ଦାରା ଆବରି କାମେ ମତ । ପୁତ୍ର ଦେଖିଣ ମୋହ ଚିତ୍ତ ॥
ଗରବ ଧନ ପଣ ଦେଖି । ବୃଦ୍ଧ କାଳରେ କରମାକ୍ଷୀ ॥
ଭାରିଯା ବନ୍ଧୁ ପୁତ୍ର ନାତି । ବୃଦ୍ଧ କାଳରେ ନ ସେବନ୍ତି ॥
ତରୁଣେ ଚର ମଣିଥାଇ । ବୃଦ୍ଧେ ଲୋଡ଼ିଲେ କି ତା ପାଇ ॥
ଜଣିରେ ସୂର୍ଯ୍ୟ କାହିଁ ଦେଖା । ମରଣେ କେ କାହାର ସଖା ॥
ଜନ୍ମ ବେଳରେ ଏକା ଜାଣ । ମରଣ କାଳେ ଏକା ଜାଣ ॥
ଏ ହେତୁ ସୁଜ୍ଞ ଜନ ଜାଣି । ବେଲହୁଁ ଗୃହେ ମୋହ ପୁଣି ॥
ବେଲହୁଁ ହେତୁ ତୁମ୍ଭେ କଲ । ଗୁରୁଙ୍କ ମୁଖେ ପଚାରିଲ ॥
ଦାରା ଆବୋରି ଥିବ ପୁଣି । ବାଳକ ଖେଳଘର ଜାଣି ॥
ଯେ ଧନ ଗୃହେ ଅରଜିବ । ଗୁରୁ ବୈଷ୍ଣବେ କିଛୁ ଦେବ ॥
ତେବେ ପାଇବ ପଥ ବାଟ । ନିଷ୍ଫଳ ନୋହିବ ଏ ଘଟ ॥
ଖୋଳ କରତାଳ ଚୂଳ ବେଶ । ଭେଖ ବହିଣ ହୁଅ ଦାସ ॥
ତରାସ ପଙ୍ଖା ବେତ ଶଙ୍ଖ । ସିଙ୍ଗା ବଇଁଶୀ ଯେନ କାଖ ॥

ପଇତା ବ ଘ ନଖ ଗ୍ରନ୍ଥି । ଭେଖ ବନ୍ଧୁଣ ଭକ୍ଷା ଲେନ୍ତି ॥
ଉଦର ପୋଷି ଦନ ନଅ । ଦୀନ ଅଚ୍ୟୁତ ଗୁଣ ଗାଅ ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟଖଣ୍ଡେ ସୃଜନ
ଲକ୍ଷଣକଥନେ ନାମ ତ୍ରୟୋଦଶ ପଟଳ ॥



## ଚତୁର୍ଦ୍ଦଶ ପଟଳ

ଶ୍ରୀଗୁରୁ ପରମ ଦେ ଗୁରୁ । ହେତୁ କହିଲେ ଶିଷ୍ୟ ତରୁ ॥
ଶୁଣ ହେ ରାହ୍ମାସର ଦାସ । ପଶୃଣ ପାର ବଡ଼ ରସ ॥
ଶୋରତା ବକତା ପଶୃରେ । ତନ ମିଳିଲେ ରସ ପୂରେ ॥
ରାହ୍ମାସ ଦାସ ପଶୃଣଲେ । କର୍ଣ୍ଣ ଦାସ ଯେ ସାତ ହେଲେ ।
ବକତା ଅଚ୍ୟୁତ ମୁଁ କହି । ଚବଣ ଶୁଣ ଗୋପ ଭାଇ । ୫ ।
ଆବର ଷୋଳସସ ଅଂଶ । ତୁମ୍ଭେ ତ ବଶେ ଶିଷ୍ୟ ଦାସ ॥
କେତେକ କହିବା ବିସ୍ତାର । ଲେଖି କେ ପାରେ ସଂଖ୍ୟା କର ॥
ରାହ୍ମାସ ଦାସ ଷଡ଼ସହ । କର୍ଣ୍ଣ ଦାସରେ ଛଡ଼ ଶସ ॥
ସହସ ଗୃଶ ଅଚ୍ୟୁତର । ଷୋଳ ସହସ ଏ କୂର୍ମର ॥
ଆମ୍ଭର ଗଣ ଏ ଅଟନ୍ତି । ଯୁଗକୁ ଯୁଗ ସଙ୍ଗେ ଥାନ୍ତି । ୧୦ ।
ଅନନ୍ତ ସତ୍ୟ ଚୈତନ୍ୟାରେ । ଦ୍ୱାପର କଳି ଏ ଯୁଗରେ ॥
କଳିରେ ନନ୍ଦଆରେ ଜାତ । ଉତ୍କଳେ ଲେମ୍ବାଳ ଥଳେ ତ ॥
ପୁଣ କଳଙ୍କିରେ ବେହାର । ଅର୍କ ସ୍ଥଳା ଯେ କଟକର ॥
ମାଳା ବଟେବା ରାଜପଣେ । କଳଙ୍କି ଅଭୟ ଚରଣେ ॥
ଷୋଳସହସ ପାପେ ଯିବ । ଛଡ଼ ଅବସ୍ଥାସେ ତୁଟିବ ।୧୫।
ଅକର୍ମେ ତନ ସସ ଯିବ । ସାତରୁ ବେନ ଯେ ଧୂସିବ ॥
ଆବର ଗୁପତେ ତୁଟିବ । କଳଙ୍କି ବେହାର ହୋଇବ ॥
ସୃଣଲକ୍ଷ ଭେଗ ହୋଇବ । ଗୃଶ ଯେ ଲକ୍ଷ ଅଶ୍ୱ ହେବ ।

ସତ୍ୟ କଲା ବୋଲଣ ନାମ । ମିଛ କଲାର ନାହିଁ ନାମ ॥
ଶୁଣ ହେ ଉତ୍ଥାନ ମଥୁରୀ । ହେତୁ କରଣ ଥିବ ଧରି । ୨୦ ।

ଶୁଣ ହେ ଆନନ୍ଦ ଗୋବିନ୍ଦ । ଦାସ ଲକ୍ଷଣ ହୃଦେ ବନ୍ଦ ॥
ଦୁଃଖକୁ ଶୋଚନା ନ ଥାଇ । କର୍ମ ଆଦରି ଦୁଃଖ ସହି ॥
ସୁଖ ପାଇଲେ ଭୋଳ ନୋହେ । ହେତୁ କରଣ ଦନ ଜାଏ ॥
ମନରେ ଭେଦ ନ ପଶଇ । ମନ୍ଦ ଠାବରେ ନ ବସଇ ॥
ବାଦ ନ ଧରଇ ପ୍ରାଣୀରେ । ସୁଚଭେ କହଇ ମଧୁରେ । ୨୫ ।

ଦେହକୁ କେଲଶ ହୋଇଲେ । କଷଣ ମାନ ଯଦି ପଡ଼େ ॥
ଦୁର୍ଲ୍ଲଭ ସୁଲଭ ଯେ ସମ । ଆନନ୍ଦେ ବହରେ ଉତ୍ତମ ॥
ଦୁଃଖ ସୁଖ ଦ୍ୱନ୍ଦ୍ୱବାଦରେ । ଦୁଲଭ ସୁଲଭ ଶୁଚରେ ॥
ବାହ୍ୟ କଷଣ ଶରୀର । ଆଠ ଲକ୍ଷଣ ଦାସଙ୍କର ॥
ଦାସ ଲକ୍ଷଣ ହେ ଆନନ୍ଦ । ଗୋବିନ୍ଦ ହୃଦମଧ୍ୟେ ବନ୍ଦ ॥ ୩୦ ।

ପୀତାମ୍ବର ପୁରରେ ବାସ । ଆନନ୍ଦ ହୋଇବ ହରଷ ॥
ବୃଦ୍ଧ ଗଙ୍ଗା ନଦୀର ତଳ । ଖଦର ଗୁପତ ସେ ସ୍ଥଳ ॥
ଗୋବିନ୍ଦ ସମ୍ଭଗ୍ରାମେ ରହି । ଧାନୁଆ ନଦୀ ନୀର ବହି ॥
ଶ୍ରୀ ନୀଳକନ୍ଦରଙ୍କ ଆଠ । ନାମ ଅଟଇ ଦେଶ କୋଠ ॥
ସେ ଦେଶେ ତୁମ୍ଭର ବିହାର । ସେ ଗୋପ କୁଳକୁ ଉଦ୍ଧାର ॥
ତୁମ୍ଭଙ୍କୁ ସ୍ମରି ସେ ଗୋପାଳ । ଶିଖିବେ ଖୋଳ କରତାଳ ॥
ଆନନ୍ଦ ଗୋବିନ୍ଦ ହେ ଦାସ । ଅଚ୍ୟୁତ କଥା ମନେ ଘୋଷ ॥

ଇତି ଶ୍ରୀଗୁରୁଭକ୍ତ ଗୀତା ତୃଣସୁଖଣ୍ଡେ ଦାସ ଲକ୍ଷଣ
ବର୍ଣ୍ଣନେ ଯୁଗକ୍ଷୟ ବିବରଣେ ନାମ
ଚତୁର୍ଦ୍ଦଶ ପଟଳ ॥

—※—

## ପଞ୍ଚଦଶ ପଟଳ

ଶ୍ରୀଗୁରୁ ଅଜ୍ଞା ହେଉ ଅମ୍ଭ । ଶୁଣିଲେ ହେବ ମନ ଦମ୍ଭ ॥
ବୈଷ୍ଣବ ଲକ୍ଷଣ କହ । ଶୁଣି ଛାଡ଼ିବ ମନ ମୋହ ॥
ବତ୍ସ ସୁଦାମ ବେନି ଶୁଣ । ବୈଷ୍ଣବ ନବ ଯେ ଲକ୍ଷଣ ॥
ବଇର ଭାବ କେନେ ନୋହେ । ମିତ୍ର ପରାଙ୍କେ ଭାଷା କହେ ॥
ସ୍ୱତର୍କ ଭାବରେ ଖେଳଇ । ତର୍କ କାହାକୁ ନ କହଇ ॥ ୫ ॥
ବିଦ୍ୟା ଗୁଣରେ ସୁପଣ୍ଡିତ । ମୂର୍ଖଙ୍କ ପ୍ରାୟେ ମଉନ ତ ॥
ମନ୍ତ୍ର ଭଜନ ନିରନ୍ତର । ହରିନାମକୁ କରେ ସାର ॥
ଚୌରାଶି ମନ୍ତ୍ର ଘୋଷେ ମନେ । ଜାଲନ୍ଧ୍ର ଯନ୍ତ୍ରର ସାଧନେ ॥
ପ୍ରଣବ ସ୍ୱଧ୍ୱ ସେ ଜାଣନ୍ତି । ଓଁକାରେ ସର୍ବ ମନ୍ତ୍ର ପାନ୍ତି ॥
ପ୍ରାଣୀରେ ପୀରତି କରନ୍ତି । ଅପ୍ରୀତି ଜନରେ ନୋହନ୍ତି ॥
ପ୍ରକୃତି ବସ ସେ ନ ଜାଣେ । ପ୍ରସିଦ୍ଧ କଥାମାନ ଶୁଣେ ॥
ପ୍ରାଣ ପୁରୁଷକୁ ଧ୍ୟାନରେ । ସ୍ୱହରେ ପରମ ସଙ୍ଗରେ ॥
ଏ ନବ ଲକ୍ଷଣ ଧରେ । ବୈଷ୍ଣବ ସଂସାରେ ସ୍ୱଚ୍ଛରେ ॥
ବତ୍ସ ସୁଦାମ ତୁମ୍ଭେ ଦୁଇ । ବୈଷ୍ଣବ ଭାବ ତୁମ୍ଭେ ବହି ॥
ବତିଶକ୍ଷର ଷୋଳ ନାମ । ହରେ ରାମ ଯେ କୃଷ୍ଣ ଶ୍ୟାମ । ୧୫ ।
ହ୍ରାଉଁ ଶ୍ରୀଉଁ କ୍ଲାଉଁ । ଦାମ ସୁମର ମନେ ରହି ॥
ଓଁକାର ଆଦି ନବ ବୀଜ । ଏ ନବ ବୀଜ ତୁମ୍ଭେ ବୁଝ ॥
ପୀତାମ୍ବର ପୁରରେ ଦେହ । ସେଠାରେ ରହି ଦିନ ନିଅ ॥
ନୀଳଗିରି ଶଙ୍ଖ ରାହାଙ୍ଗେ । ସେ ସ୍ଥାନେ ବତ୍ସ ଖେଳ ରଙ୍ଗେ ॥
ଭାର୍ଗବୀ ନଦୀକୂଳେ ବାସ । ଦୀନ ଅଚ୍ୟୁତ କଥା ଘୋଷ ॥

ଇତି ଶ୍ରୀଗୁରୁଭକ୍ତି ଗୀତା ତୃତୀୟ ଖଣ୍ଡେ ବୈଷ୍ଣବ
ଲକ୍ଷଣ କଥନେ ନାମ ପଞ୍ଚଦଶ ପଟଳ ॥

—:o:—

° ୬—ହ୍ରୀଁ ଶ୍ରୀଁ କ୍ଲୀଁ ॥ ( ଖ, ଗ )

## ଷୋଡ଼ଶ ପଟଳ

ଆଜ୍ଞା ପରମ ଗୁରୁ ହେବ । ଏ ଜୀବ ତେବେ ନିସ୍ତରିବ ॥
ବୈରାଗ୍ୟ ଲକ୍ଷଣ ବହ୍ନଣ । ପ୍ରାଣୀ ସଂସାରେ ଖେଳେ ପୁଣ ॥
ଶୁଣ ହେ ଉତ୍ଥାନ ମଥୁରି । ବୈରାଗ୍ୟ ହେତୁ ତୁମ୍ଭେ ଧରି ॥
ଶୁଣ କହିବା ଲଇକ୍ଷଣ । ଶରଧା ଚିତ୍ତେ ମନେ ଘେନ ॥
ମଙ୍ଗଳ ଭୁବନ କରନ୍ତି । ନିର୍ଦ୍ୱନ୍ଦୀ ହୋଇ ବସିଥାନ୍ତି ॥
ପରହିତରେ ଗ୍ରାମ ବାସ । ଦଅନ୍ତି ଅନ୍ନଜଳ ଗ୍ରାସ ॥
ପରଦାରାକୁ ଚିତ୍ତ ନାହିଁ । ଡୋର କୌପୁନୀ ମାରି ରହି ॥
ପର ଧନରେ ନାହିଁ ଚିତ୍ତ । ଯେ ମିଳେ ଭୁଞ୍ଜଇ ତୁରିତ ॥
ପରମେଶ୍ୱର ଚିନ୍ତା କରି । ରହନ୍ତି ପୁଣ୍ୟ ଥାନ ଧରି ॥
ମନ୍ତ୍ରକୁ ଭଜନ କରନ୍ତି । ନିଶ୍ଚିନ୍ତ ସ୍ଥାନେ ବସିଥାନ୍ତି । ୧୦ ।
ଯନ୍ତ୍ରକୁ ତନ୍ତ୍ରରେ ଭେଦଣ । ସାଧନା କରୁଥାନ୍ତି ପୁଣ ॥
ପ୍ରଣବ ଗୁରୁ ଦଣ୍ଡବତ । ତ୍ରିସନ୍ଧ୍ୟା କରୁଥାନ୍ତି ସେ ତ ॥
ନିର୍ବେଦ ଚିତ୍ତେ ବହି ତୋଷ । ମୋହକୁ ନ କରେ ମୁହାସ ॥
ମୋହିନୀ ମାୟାରେ ନ ପଡ଼ି । କୌପୁନ କଟି ଥାନ୍ତି ଭିଡ଼ି ॥
ବୈରାଗ୍ୟ ଏ ଦଶ ଲକ୍ଷଣ । ଆନନ୍ଦ ମଥୁରି ହେ ଶୁଣ ॥
ଶ୍ରୀନୀଳକନ୍ଦର ପୂର୍ବରେ । ବାଙ୍କି ଯେ ମୁହାଣ ସେଠାରେ ॥
ସେଠାରେ ମଠ କରି ରହ । ତୁମ୍ଭର ଗ୍ରୁଡ଼ିବ ଯେ ଦେହ ॥
ଅବଶ୍ୟ ବେନି ଗୋଟିକର । ଭୁଞ୍ଜି ନିର୍ମାଲ୍ୟ ଦିନ ହର ॥
ତୁଳସୀ ଧଣ୍ଡା ଜଗନ୍ନାଥ । ଗୁନ୍ଥିଣ ଥିବ ତୁମ୍ଭ ହସ୍ତ ॥
ଖୋଳ ହତ୍ୱାନ ବଜାଇବ । ମଥୁରି କର୍ତ୍ତାଳ ଧରିବ । ୨୦ ।
ଶ୍ରୀଜଗନ୍ନାଥ ଗୁଣମାନ । କରିବ ନାମ କୀରତନ ॥
ଅଚ୍ୟୁତ ମଠ ଭଣାଇବ । ତୁମ୍ଭର କଥା ରହିଥିବ ॥
ଗୋପାଳ କୂଳ ବାଧଗାଈ । ସୁନ୍ଦର ପଳ ତହିଁ ବନ୍ଧି ॥

ବାଧ କରନ୍ତି ଯେତେ ହେବ । ସେ ମଠେ ନେଇ ବନୋଇବ ॥
ଶରଧା ଚଢେ ଯେବା ଦେବ । ଅବଢ଼ା ମାନ ଖଣ୍ଟୁଥିବ ॥
ଗୋପାଳ ପୋଷ୍ୟେ ଯେତେ ଥିବେ । ସେଠାରେ ତୁମ୍ଭଙ୍କୁ ସେବବେ ॥
ଗୋପାଳ କୁଳେ ତୁମ୍ଭେ ବୀଜ । ତୁମ୍ଭଙ୍କୁ ସେ କରିବ ପୂଜ୍ୟ ॥
ତୁମ୍ଭ ସମାଧି ଦରଶନ । ଦର୍ଶନେ ଲଭି ତୀର୍ଥ ପୁଣ୍ୟ ॥
ତୁମ୍ଭ ସମାଧି ନ ପୂଜିବ । କ୍ଷେତ୍ରରେ ଫଳ କି ପାଇବ ॥
ଜ୍ୟୋତିରାନନ୍ଦ ଲକ୍ଷ୍ୟେ କରି । ଶ୍ରୀ ଜଗନ୍ନାଙ୍କୁ ସୁମରି ॥
ଅଣଅକ୍ଷର ଏକାକ୍ଷର । ତାରକ ଲକ୍ଷ୍ୟ ଠାବକର ॥
ଯାମ ପଞ୍ଚାକ୍ଷର ସେ ପୁଣ । ହରେ ରାମ ସେ ବତିଶେଣ ॥
ହରିଦ ରାମାଦ କୃଷ୍ଣାଦ । ଓଁକାର ରାମ ଗୃହ ଭେଦ ॥
ଶୂନ୍ୟ ଭଜନ ମନ୍ତ୍ର ଧର । ଏ ଦଶ ମନ୍ତ୍ରକୁ ସୁମର ॥
ଦଶ ଲକ୍ଷଣ ଦେହେ ବନ୍ଧୁ । ନୀଳ ଗିରିରେ ରହି ଯାଇଁ ॥
ଯେତେ ଦିନରେ ଜଗନ୍ନାଥ । ନୀଳାଚଳରେ ଥିବେ ସେତ ॥
ତୁମ୍ଭର ଥାନ ଥିବ ରହି । କୀର୍ତ୍ତି ରହିଣ ଥିବ ମହୀ ॥
ତୁମ୍ଭ ବାଜେଣା ଯେ ଗାୟନ । ଶୁଣି ସନ୍ତୋଷ ନୃପ ଜାଣ ॥
ପତନୀ କୃଷ୍ଣାଞ୍ଚଳ ଶାଢ଼ୀ । ଅବଶ୍ୟ ରାଜା ଦେବ ଲୋଡ଼ି ॥
ପ୍ରସିଦ୍ଧ ପଣେ ବସିଥିବ । ଦେଉଳ ଦୁଆରେ ଗାଇବ । ୪୨ ।
ପ୍ରତାପ ରାଜ ବଇଷ୍ଣବ । ପ୍ରଚ୍ଛନ୍ନ କରି ଠାବ ଦେବ ॥
ଶ୍ରୀ ଜଗନ୍ନାଥ କଛୁଦିନ । ଲୀଳା କରିବେ ସେହି ସ୍ଥାନ ॥
ଦେଉଳକୁ ଉଭେଇଣ ଯିବେ । ପୁଣ କଳକି ରୂପ ହେବେ ॥
ଦାରୁ ପାଷାଣ ରୂପମାନ । ସମସ୍ତେ ହୋଇବେ ଗୋପନ ।
କଳଙ୍କି ରୂପ ଦରଶନ । କରିବେ ଆତ୍ମା ଜ୍ୟୋତି ଧ୍ୟାନ ॥
ତୁମ୍ଭେ ସେ ସଙ୍ଗେ ବିହରିବ । ନବୀନ ଜନମ ପାଇବ ॥
ସେକାଳେ ହେବ ବଡ଼ ଦୁଃଖ । ପ୍ରାଣୀଙ୍କି ନାହିଁ କିଛି ସୁଖ ॥
ସତ୍ୟଯୁଗରେ ପରଜାଏ । କଳଙ୍କି କରେ ପ୍ରଶଂସାଏ ॥
କଳିରେ ମ୍ଳେଚ୍ଛ ଯାର । ବତିଶ ସପ କ୍ଷୟକର ॥
ଏହି ସେ ବତିଶ ସପେଣ । ଏ ଜନ୍ମେ ସୁଖ ନାହିଁ ପୁଣ ॥

ଅନ୍ନ କଷ୍ଟ ଯେ ବସ୍ତ୍ର କଷ୍ଟ । ରାଜ୍ୟ କଷ୍ଟନ୍ତୁଁ ପୁତ୍ର କଷ୍ଟ ॥
ଚଲ୍ତା କଷ୍ଟ ଯେ ନଶା ନଷ୍ଟ । ଏ କଷ୍ଟେ ପ୍ରାଣୀ ନଷ୍ଟ ଭ୍ରଷ୍ଟ ॥
ପିଣ୍ଡା ତେଜିଲା ପୁତ୍ର କଷ୍ଟେ । ପିତା ବିମୁଖ ଗୃହ ଭ୍ରଷ୍ଟେ ॥
ଏ କଷ୍ଟେ ପ୍ରାଣୀଙ୍କ ଆରତ । ଅଚ୍ୟୁତ ନହଇ ଆଗତ ॥

ଇତି ଶ୍ରୀ ଗୁରୁଭକ୍ତିଗୀତା ତୃତୀୟଖଣ୍ଡେ ବୈଷ୍ଣବ ଲକ୍ଷଣ
କଥନେ ନାମ ଷୋଡ଼ଶ ପଟଳ ॥

---

# ସପ୍ତଦଶ ପଟଳ

ସୁମର ହୃମନ୍ତ ଗୁଣମାନ । ଅମ୍ଭେ ହରୁଣଥିବୁ ଦନ ॥
ମହନ୍ତ ଲଇଷଣ ଯେତେ । ଅଜ୍ଞା ଯେ ହୋଇବ ସୁଚତେ ॥
ଶୁଣ ରାହାସ ଦାସମାନେ । ହେତୁ କରିଣ ରଖ ମନେ ॥
ଆମ୍ଭର ସଙ୍ଗେ ଖେଳୁଥାନ୍ତି । ମନକୁ ନିଶ୍ଚଳେ ରଖନ୍ତି ।
ପର ଅପର ତାଙ୍କ ନାହିଁ । ସଙ୍ଗତେ ସର୍ବ ଲୋକ ରହି ॥
ପଦ୍ମପତର ପାଣି ମତ । ମିଶି ନ ମିଶି ରହେ ଚିତ୍ତ ॥
ସ୍ୱଧର୍ମ ସ୍ୱକର୍ମ କରନ୍ତି । ସୁଶୀଳ ଶୁଦ୍ଧ ତାଙ୍କ ମତ ॥
ଆନନ୍ଦ ସର୍ବଦା ଚିତ୍ତରେ । ଅନ୍ନ ବସନ ଦାନ କରେ ॥
ଜୀବରେ ଦୁଃଖ ନ ଦିଅନ୍ତି । ଦୁଃଖୀ ଦରିଦ୍ରଙ୍କୁ ପୋଷନ୍ତି ॥
ମରନ୍ତ ଏହୁ ପାଞ୍ଚଜଣ । ରାମ ଭରଥ ଧର୍ମ ପୁଣ । ୧୦ ।
ବିଷ୍ଣୁ ଭକ୍ତ ଯେ ପାଞ୍ଚ କହୁ । ଦକ୍ଷିଣ ଚନ୍ଦ୍ର ନନ୍ଦ ଦୁଇ ॥
କମାର ରାମ ନିରଞ୍ଜନ । କୁମ୍ଭାର ରାମ ମନେ ଘେନ ॥
ଦ୍ୱିଜ ଶାମ ବଣିକ ହରି । ଏମନ୍ତେ ବାର ନାମ ଧରି ॥
ଏ ବାର ମହନ୍ତ ଲକ୍ଷଣ । ମୁକୁନ୍ଦ ଅନନ୍ତ ଭଜଣ ॥
ଚଉଦ ମହନ୍ତ ହେ ଶୁଣ । ଶିର ରଖିବ ଯହିଁ ପୁଣ ।
ରାମ ଲେମ୍ବାଲେ ଅଙ୍ଗ ଥୋଇ । ପିତାର ପୁରେ ଭ୍ରଥ ରହି ॥

ଧରମୁ ଯାଇଲେ ବନ୍ଧର । ସୁନୁପୁରକୁ ବସ୍ତୁ ଧର ॥
ଶରଯା ଗ୍ରାମେ ବନ୍ଧ ରହୁ । ସମାଧି ପଞ୍ଚଜଣ ଦେଇ ॥
ନନ୍ଦ ରହିବ ଯାଇବର । ଦକ୍ଷିଣ ଷୋଳ କରଣାର ॥
ରାମ ରାମ କୁମାର ଲେହ । ଦାମୋଦର ପଟଣେ ରହ ॥
ଦ୍ୱିଜ ଶ୍ୟାମ ଇଟୁଆ ଗ୍ରାମ । କୁଶମଣ୍ଡଳେ ଗୋପୀ ରମ ॥
ପଣସ ପୁରେ ନିରଞ୍ଜନ । ରହିବ ଏଣୁ ଯେ ସୁସ୍ଥାନ ॥
ମୁକୁନ୍ଦ ବାଇଖୋଲେ ରହ । ଅନନ୍ତ ବାଲଝର ଥାଅ ॥
ଚୌଦ ମହାନ୍ତ ରହ ପୁଣ । ଉଦ୍ଧାର ଗୋପକୁଳ ଜନ ॥
ରାହାସ ମହନ୍ତ ହେ ଦୁଇ । ମୁକୁନ୍ଦ ଅନନ୍ତ ଦସାଇ ॥
କର୍ଣ୍ଣଦାସ ଯେ ସାତଜଣ । ରାମ ଭରଥ ଦୁଇଜଣ ॥
ଚୌରାଶି ମନ୍ତ୍ର ଘୋଷୁଥିବ । ଚୌରାଶି ଯନ୍ତ୍ରକୁ ଗୁହିଁବ ॥
ନୀର କ୍ଷୀର ମଧୁର ମତ । ମିଶିଲେ ହୁଅଇ ଯେମନ୍ତ ॥
ମଧୁର ଅମୃତ ଯେ ପୁଣ । ରାହାସ କର୍ଣ୍ଣ କ୍ଷୀର ଜାଣ ॥
ଗୋପାଳଗଣ ଯେତେ ଛନ୍ତି । ନୀରର ପ୍ରାୟେ ସେ ଅଟନ୍ତି ॥
ନୀର ବା ମଧୁରେ ମିଳିବ । ମଧୁରେ ନୀର ଲୁଚିଯିବ ॥
କ୍ଷୀର ଦଧିରେ ନୀର ଦେବା । ନୀରକୁ ବାରି ନ ପାରିବା ॥
କେ ଅବା ରାହାସ ଶିଖିବ । କେ ଅବା ବୈରାଗେ ଭ୍ରମିବ ॥
କେ ଅବା ସେବାରେ ଖଟିଣ । ଏମନ୍ତେ ଓଦର ପୋଷଣ ।
ଏମନ୍ତ ଅଂଶରେ ମିଳିବେ । ଅଚ୍ୟୁତଗଣ ବୋଲାଇବେ ॥
ଚଦ୍ଦଶ ଗୋପାଳ ଯେ ସାର । ମୂଢ଼ ଗୋପାଳ କୁଳ ତାର ॥
ଆପୁ ଗଞ୍ଜା ଯେ ଧୂମମାନ । ବସର ନ କର ଆପ୍ୟାନ ॥
ମାଛ ମାଉଁସ ଛଡ଼ାଇବ । ଅଶୁଦ୍ଧ ଦ୍ରବ୍ୟ ନ ଛୁଇଁବ ॥
ଏତେକ ଦ୍ରବ୍ୟ ଯେବେ ଖାଇ । ମଣୋହି ସିଦ୍ଧ ପୂର୍ଣ୍ଣ ନୋହି ॥
ଧୂମରେ ହସ୍ତ ଯେ ଉଚ୍ଛିଷ୍ଟ । ଗଞ୍ଜାରେ ପଦ ହୁଏ ଭ୍ରଷ୍ଟ ॥
ନିଷେଧ ମଦ୍ୟ ଯେ ମାଉଁସ । ମଣୋହିଠାରେ ନାହିଁ ଲେଶ ॥
ମହାପ୍ରସାଦ ମନେ କର । ଅନ୍ନ ଭୁଞ୍ଜନ୍ତି ସାଧୁ ଧର ॥

ମହାପ୍ରସାଦ ମସ୍ତ୍ୱ ଖାଇ । ଏ କଥା ଉଚିତ ନୁହଇ ॥
କଳି ଭ୍ରଷ୍ଟଙ୍କୁ ନିତ୍ୟାନନ୍ଦ । ସଂସାରେ ରଚିଲେ ସୁସ୍ୱାଦ ॥
ନିସ୍ପିଷ୍ଟ ପଥରେ ଯାନ୍ତେ । ସଂସାର ପୋଡ଼ି ସେ ଦଅନ୍ତେ ॥
ସର୍ମ୍ପୂର୍ଣ୍ଣ ମନ୍ତ୍ରକୁ ଭଜନ୍ତେ । ଉଆ ଗୃହଳ ନୂଆ ଖାନ୍ତେ ॥
କଳିର କାଳ କି ହୁଅନ୍ତା । ସେବାରେ ପ୍ରାଣୀ ନାଶ ଯାନ୍ତା ॥
ଷୋଳରୁ ତିନି ନାମ କଲେ । ହରେ ରାମକୃଷ୍ଣ ବନ୍ଧିଲେ ॥
ମାଛ ମାଉଁସ ଭିଆଇଲେ । ପ୍ରାଣୀକି କପଟ ସେ କଲେ ॥
ଏ ଛନ୍ଦେ ତୁମ୍ଭେ ନ ପଶିବ । ମୁଖେ ରହାସ ଗାଉଥିବ ॥
ନବୀନ ହାଣ୍ଡି ଭିଆଇବ । ନବୀନ ଉଆ ଖୁଆଇବ ॥
ସୁଖେ ସଂସାରେ ବିହରିବ । ମସ୍ତ୍ୱ ମାଂଏସକୁ ତେଜିବ ॥
ଅଚ୍ୟୁତ ବଚନକୁ ପାଳି । ବଳେ ଖାଇବେ ଯେବେ ମିଳି ॥
ଗୁଳ୍ମ ବ୍ୟାଧିରେ ମରିବ । ଅଳପ ଦିନେ ନାଶ ଯିବ ॥
ଅଳପ ଆୟୁଷ ତାହାର । ପୁନ ଜନମ ନାହିଁ ତାର ॥
ବ୍ରଜବାସୀଙ୍କି ଏ ନିଷେଧ । ସଂସାର ଜନେ ନାହିଁ ବାଧ ॥
ବ୍ରଜ ଗୋପାଳ ଏହା ଧର । ଅଚ୍ୟୁତ ଆଜ୍ଞା କର ସାର ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟ ଖଣ୍ଡେ ମହନ୍ତ
ଲକ୍ଷଣ କଥନେ ନାମ ସପ୍ତଦଶ ପଟଳ ॥



# ଅଷ୍ଟାଦଶ ପଟଳ

ଶୁଣ ଶ୍ରୀଗୁରୁ ହେ ପରମ । ଛୁଡ଼ନ୍ତୁ ଅନ୍ତର ମନ ଭ୍ରମ ॥
ମହନ୍ତ ଲକ୍ଷଣ କେମନ୍ତ । ତୁମ୍ଭେ କହ ଅହେ ନାଥ ॥
ଦାରୁ ପାଷାଣ ପ୍ରାଏ ହୋଇ । ସ୍ୱଭାବ ତାଙ୍କର ଅଟଇ ॥
ପ୍ରେମ ଭକତ ଗଦ ଗଦ । ଶୁଣିଲ୍ ସୁଧର୍ମ ସୁପ୍ରଦ ॥
ବିବେକ ବିଦ୍ୟା ବୁଦ୍ଧି ମତ । ବସ୍ତୁ ଜନଙ୍କୁ ସେ ରହନ୍ତି ॥
ସକଳ ଜନେ ଦାନ ଦିଏ । ଉତ୍ତମ ଭୋଜନ ଭୁଞ୍ଜାଏ ॥
ପର ଅପର ଗୃହେ ମାନ । ବ୍ରାହ୍ମ ଚଣ୍ଡାଳ ଶୂଦ୍ରେ ଧନ ॥
ଷୋଳୀ ବୈଶ୍ୟ ଅଠର ପାଟ । ଛତିଶ କୁଳୀ ଯେତେ ଘଟ ॥
ସମସ୍ତ ଏକ କରି ଥାଇ । ଅଭିନ୍ନ ତାର କାହିଁ ନାହିଁ ॥
କୋଟିଏ ମନୁଷ ବାଛୁଣ । ଉତ୍ତମ ଜନେ ମିଳେ ପୁଣ ॥
ଉତ୍ତମ କୋଟିଏ ବାଛିବା । ଏକଇ ସାଧୁ ଯେ ପାଇବା ॥
ସାଧୁଙ୍କୁ କୋଟିଏ ବାଛୁଣ । ବୈଷ୍ଣବ ମିଳେ ଏକ ଜଣ ॥
ବୈଷ୍ଣବ କୋଟିଏ ବାଛୁଣ । ସନ୍ଥ ମିଳଇ ଏକ ଜଣ ॥
ସନ୍ଥଙ୍କୁ କୋଟିଏ ବାଛିଲେ । ମହନ୍ତ ମିଳେ ଏକ ଭଲେ ॥
ମହନ୍ତ କୋଟିଏ ବାଛିଲେ । ମହାତ୍ମା ଦରଶନ ଭଲେ ॥
ମହାତ୍ମା ପୁରୁଷ ଯେ ଜନ । ତାଙ୍କର ତ୍ରିଭୁବନେ ଥାନ ॥
ଏକ ଲକ୍ଷଣ କେବା ଧରି । ସେ ସ୍ଥିର ଧାମକୁ ଆବରି ॥
ଜଗନ୍ନାଥ ଯେ କୃଷ୍ଣବ୍ରହ୍ମ । ଭଗବାନ ଯେ ସ୍ଥିର ଧାମ ॥
ଏ ଧାମ ତାଙ୍କର ନିତ୍ୟରେ । ସେବନ୍ତି ରାଜ ଉବସରେ ॥
ମହାତ୍ମା ପୁରୁଷ ବୋଲନ୍ତି । କୃଷ୍ଣ ମହାତ୍ମ୍ୟ ଏକ ଚିନ୍ତି ॥
ଦାରୁ ପାଷାଣ ମତ ହୋଇ । ବସିଲ ଠାରୁ ନ ଉଠଇ ॥
ବସିଣ ଦିଏ ଅନ୍ନ ଦାନ । ବସି କରଇ କୃଷ୍ଣ ଧ୍ୟାନ ॥
ମହାତ୍ମା ଲଇକ୍ଷଣ ଥାଇ । ଗୁରୁ ସେବାରେ ମନ ଦେଇ ॥
ଗୁରୁଙ୍କୁ ନ ଛାଡ଼ଇ କ୍ଷଣେ । ସେବଇ ଗୁରୁଙ୍କ ଚରଣେ ॥
ମହାତ୍ମା ଲକ୍ଷଣ ବ୍ରହ୍ମର । କହିଲ ଗୁରୁ ଶ୍ରୀପଦ୍ମର ॥

ଉତ୍ଥାନ ଅନନ୍ତ ମୁକୁନ୍ଦ । ସେବିଲ ଗୁରୁ ପାଦ ବନ୍ଦ ॥
ଆବର ନୀଳଗିରି ସେବା । ମହାତ୍ମା ସ୍ନେହେଣେ ତୁମ୍ଭ ସେବା ॥
ଯେ ଜନ ଅନ୍ନ ବସ୍ତ୍ର ଦେଇ । ମହାତ୍ମା ପୁରୁଷଟି ସେହି ॥
ବୃକ୍ଷ ଲଗାଇ ଛାଇ ଦେଇ । ମହାତ୍ମା ପୁରୁଷଟି ସେହି ॥
ମୌଛବ କରି ଅନ୍ନ ଦିଏ । ମହାତ୍ମା ଲକ୍ଷଣ ସେ ହୁଏ ॥
ଜୀବରେ ହିଂସା ଯାର ନାହିଁ । ମହାତ୍ମା ଲକ୍ଷଣ ଅଛଇ ॥
ମିଥ୍ୟା ବଚନ ଯେ ନ କହେ । ମହାତ୍ମା ଲକ୍ଷଣ ତା ଦେହେ ॥
ମୁକୁନ୍ଦ ଅନନ୍ତ ଗୋବିନ୍ଦ । ଉତ୍ଥାନ ପବନ ହେ ବନ୍ଦ ॥
ଶୁଣ ହେ ରହ ସ୍ନେହେଣେ ଦେଶେ । ଉତ୍ଥାନ ନୀଳଗିରି ବାସେ ॥
ଅନନ୍ତ ମଥୁରା ଦେଶରେ । ସେବା ବୃନ୍ଦଲେ ହରଷରେ ॥
ଏଣୁ ମହାତ୍ମା ତୁମ୍ଭେ ଶୋଭ । ଏ ସପ୍ତ ଗୋପର ଦୁର୍ଲ୍ଲଭ ॥
ଦୀନ ଅଚ୍ୟୁତ କହେ ସାର । ତୃତୀୟ ଖଣ୍ଡର ବିଚାର ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟ ଖଣ୍ଡେ ମହାତ୍ମା
ଲକ୍ଷଣ କଥନେ ନାମ ଅଷ୍ଟାଦଶ ପଟଳ ।



## ଊନବିଂଶ ପଟଳ

ଶ୍ରୀଗୁରୁ ଦେବ ଉଦ୍ଧାରଣ । ଭବରୁ କର ପରିତ୍ରାଣ ॥
ଭକତି କଲେ ଗତି ହୋଇ । ଭକତି କେତେ ବିଧ ବହି ॥
ଶୁଣ ହେ ଚିକ୍କଣ ଗୋପାଳ । କହିବା ବେଗଳ ବେଗଳ ॥
ଭକତି ନବ ପରକାର । ସାଧନ୍ତି ଥୋକେ ଥୋକେ ନର ॥
ଦଶ ଭକତି ବଡ଼ ଗାଢ଼ । ଏକ ଏକ ବା କଲେ ଦୃଢ଼ ॥
ନବଧା ଭକତି ଲକ୍ଷଣ । ଅନନ୍ତ ମୁକୁନ୍ଦ ହେ ଶୁଣ ॥
ରାମ ଭରଥ ବଶିଷ୍ଠ ଦାସ । ଧରମୁ ବନ୍ଧ ଶୁଣ ରସ ॥

ଶ୍ରବଣେ ହରି କଥାଶୁଣ । କୀର୍ତ୍ତନ କରନ୍ତୁ ହର୍ଷେଣ ॥
ଦିବା ନିଶାଏ କୃଷ୍ଣ ଲକ୍ଷ୍ୟେ । ହରି ଗୁଣ ସ୍ମରି ଦେହେ ॥
ପାଦ ପଦ୍ମରେ ସେବା କରି । ଅର୍ଚ୍ଚନ ପୁଷ୍ପ ଗନ୍ଧ ଧରି ॥
ସ୍ତୁତି ବନ୍ଦନ ମୁଖେ ନିତି । ଦାସର ପ୍ରାପ୍ତେ ହେବ ମତି ॥
ମନରେ ସୃଷ୍ଟି ନିରିମଳ । ହେତୁ ଧରିବେ ହୃଦସ୍ଥଳ ॥
ସେବା କରିବ ନିତି ଦିନ । ଶ୍ରୀରାଧା କୃଷ୍ଣ ହେବ ମାନ୍ୟ ॥
ଏ ନବ ଭକତି ଲକ୍ଷଣ । ଧରିଲେ ଯେଉଁ ମାନେ ଶୁଣ ॥
ଶ୍ରବଣ ଭକ୍ତ ପରୀକ୍ଷିତ । ଶ୍ରୀ ଭାଗବତେ ଦେଲେ ଚିତ୍ତ ॥
ଶ୍ରୀ ଭାଗବତ ସାର ପାଇ । କୃଷ୍ଣ ରୂପକୁ ହୃଦେ ଧ୍ୟାଇ ॥
ମରଣ ସଙ୍କଟୁ ତରିଲେ । କୋଟି ସମାଧି ଲକ୍ଷ୍ୟେ କଲେ ॥
ନାରଦ ବୀଣା ବଜାଇଣ । କୀର୍ତ୍ତନ କଲେ ସେ ହର୍ଷେଣ ॥
କୃଷ୍ଣର ପାଦପଦ୍ମ ସଙ୍ଗ । ନିମଜ୍ଜି ରହିଲେ ସେ ଅଙ୍ଗ ॥
ଦର୍ଶନ କରି କଂସ ମରେ । କୃଷ୍ଣ ହସ୍ତ ଲାଗିଲା ଶିରେ ।
ଧ୍ରୁବ ସ୍ମରି ଜପ କରି । ଦଶ ଅକ୍ଷର ମନ୍ତ୍ର ଧରି ॥
ସପତ ଋଷି ହେତୁ ଦେଲେ । ସ୍ମରି କୃଷ୍ଣଙ୍କୁ ପାଇଲେ ॥
ଉଦ୍ଧବ ସେବା ବିଧି କରି । ପାଦପଦ୍ମକୁ ଶିରେ ଧରି ।
ତ୍ରିକୂଟେ ପାଦ ଚହ୍ଲାଇଲେ । ସେ ପାଦପଦ୍ମ ଧ୍ୟାନ କଲେ ॥
ରତ୍ନ ପାଦୁକା ଚହ୍ଲାଇଣ । ହୃଦରେ ଦେଖାଇଲେ ପୁଣ ॥
ତ୍ରିଭଙ୍ଗୀ ରୂପକୁ ଦେଖିଣ । ବଦରି-ନାଥକୁ ଗମିଣ ॥
ଅଗ୍ନିର ପ୍ରାପ୍ତେ ଯେଉଁ କୋଟି । ସୂର୍ଯ୍ୟର ପ୍ରାପ୍ତେ ଯାର କାନ୍ତି ॥
ସୂର୍ଯ୍ୟରୁ ଜିଣି ଯା କାରଣ । ଏ ରୂପ ପାଇ ତପ ପୁଣ ॥
ଏଣୁ ସେ ପାଦ ସେବା କଲେ । ସେ ପାଦେ ଶରଣ ପଶିଲେ ॥
ଅର୍ଚ୍ଚନ ଭକତି ପୃଥ୍ୱୀ । ଏ ପୁଣ ପାଇଲେ ଯେ ସେବି ॥
ଆରାଧି କୃଷ୍ଣକୁ ବନ୍ଦିଲେ । ପାଦପଦ୍ମକୁ ସନ୍ଧରିଲେ ॥
ଶୁକ ଯେ କୃଷ୍ଣ ଗୁଣମାନ । ବନ୍ଦନା କଲେ ସେ ମୁଖେଣ ।
ବନ୍ଦନା କରି ନିରନ୍ତର । ମିଶିଲେ ନିର୍ଗୁଣ ରୂପର ॥

ବ୍ୟାସ ତାହାଙ୍କୁ ଗୋଡ଼ାଇଲେ । ସେ ଅଙ୍ଗେ ପଶି ନ ପାରିଲେ ॥
ସେ ଅବ୍ୟକ୍ତରେ ମିଶିଲେ । ପ୍ରାଣୀଙ୍କ ଗୁଣ କହିଗଲେ ॥
ଅକ୍ରୂର ପାଦେ ସେବା କରି । ଗୁଚ୍ଛିଲେ ଧନ ପଣ ଶିଖି ॥
ଦୁର୍ଯ୍ୟୋଧନର ଅଭିମାନେ । ରହିଲେ ନିଗମ ସେ ସ୍ଥାନେ ॥
ଧ୍ୟାନେ ରୂପକୁ ଦରଶନ । କୃଷ୍ଣ ଲଭିଲେ ହେଉ ମନ ॥
ନିର୍ମଳ ମନ ବୁଦ୍ଧି କରି । କୃଷ୍ଣର ଅଙ୍ଗ ସଙ୍ଗ କରି ॥
ରାତ୍ର ଦିବସ ନ ଜାଣିଲେ । ସଂସାର ଚେଷ୍ଟା ଗୁଚ୍ଛିଲେ ॥
ପୁତ୍ରହିଁ କୃଷ୍ଣକୁ ସେ କଲେ । ଧନହିଁ କୃଷ୍ଣଙ୍କୁ ବୋଇଲେ ॥
ପଣହିଁ କଲେ କୃଷ୍ଣ କଥା । କୁଳ କୁଟୁମ୍ବେ ନାହିଁ ବ୍ୟଥା ॥
ଏମନ୍ତେ ଅଙ୍ଗ ସଙ୍ଗେ ଥିଲେ । ମଥୁରା ଗୁଚ୍ଛି କୃଷ୍ଣ ଗଲେ ॥
ଦ୍ୱାରକାପୁରେ କରି ବାସ । ବଢ଼ିଲେ ବହୁତ ସେ ଅଂଶ ॥
ଏକ ସମୟେ କୁରୁକ୍ଷେତ୍ରେ । ଗୋପ ଦ୍ୱାରକା ମିଳି ପୁତ୍ରେ ॥
ସେଠାରେ ହେଉ ତାଙ୍କୁ ଦେଲେ । ସୂକ୍ଷ୍ମ ରୂପ ଦେଖାଇଲେ ॥
ସେ ରୂପ ପାଇ ଗୋପୀ ତୋଷ । ଛେଦିଲେ ଭବବନ୍ଧ ପାଶ ॥
ନିର୍ଗୁଣ ରୂପକୁ ଗ୍ରହିଲେ । ସଗୁଣ ରୂପ ପାସୋରିଲେ ॥
ବ୍ରାହ୍ମଣ ସ୍ତ୍ରୀମାନେ ପୁଣ । ଗୋପୀଙ୍କ ସଙ୍ଗେ ସେ ମିଶିଣ ॥
କୃଷ୍ଣର କଥା ଶୁଣି ତୋଷ । ଘୋଷିଲେ ବରଷେ ସେ ମାସ ॥
ଅନ୍ନ ତାହାଙ୍କୁ ମଗାଇଲେ । ବ୍ରାହ୍ମଣୀମାନେ ଅନ୍ନ ଦେଲେ ॥
ଏକ ବ୍ରାହ୍ମଣୀ ସେ ନଗଲା । ଧ୍ୟାନରେ କୃଷ୍ଣଙ୍କୁ ଦେଖିଲା ॥
ଧ୍ୟାନ ମୂରତି ସେ ଦେଖିଣ । ପଶିଲା ଶ୍ରୀକୃଷ୍ଣ ଅଙ୍ଗେଣ ॥
ଶ୍ୱେତ ରଙ୍ଗ କଳା ଶ୍ୟାମଳ । ନୟନେ ଦେଖି କଲା ଠୂଳ ॥
ଏରୂପ ଦେଖି ପ୍ରାଣ ଦତ୍ତ । ପଶିଲା ଶ୍ରୀକୃଷ୍ଣ ଅଙ୍ଗେ ତ ॥
ମନେ ଶ୍ରବଣ ଗତି ପାଇ । ମନ ଭକତି ଏମ୍ଭୁ ହୋଇ ॥
ନବ ଭକତି କର୍ମ କରି । ଦଶ ଭକ୍ତିରେ ସେ ନିସ୍ତରି ॥
ମାତା ଉଦରେ ଯେବେ ଥାଇ । ଶ୍ରବଣେ କି ଶୁଣୁଅଛଇ ॥
ଜଠରେ ଯେବେ ରହିଥିଲା । କୀର୍ତ୍ତନ କାହୁଁ ବା ପାଇଲା ॥

ନସ୍ଥନ ବୃକ୍ଷଥିଲା ପେଟ । ରୂପ ଦେଖିଲା କାହିଁ ସେ ତ ॥
ଗର୍ଭରେ କାହିଁ ସୁମରଣ । ହେଉ ଯେ ଥିଲା କାହିଁ ପୁଣ ॥
ବନ୍ଧନ ନାଡ଼େ ସେହୁ ଥିଲା । ସୁମର କାହୁଁ ତ ଅଇଲା ॥
ପାଦ ସେବାରେ ନାହିଁ ଚଉ । ଅମନେ ରହୁଥିଲା ସେ ତ ॥
ହସ୍ତେ କି ଅଛ ନା କରିବ । କଷ୍ଟଲେ ବନ୍ଧନେ ସେ ଥିବ ॥
ଗୁଣ ବନ୍ଧନ ଯେଉଁଠାର । ବନ୍ଧନ ସ୍ତୁତ କାହୁଁ ଆର ॥
ଦାସଗଣରେ ପାଦ ଘୋଷି । ସେଠାରେ ହସ୍ତେ ରହେ ଫାଶି ॥
ଅଙ୍ଗ ସୁଷମ ଆର କାହିଁ । ରୁଧିରେ ଜରଜର ଦେହୀ ॥
ଅମନେ ରହୁଥିଲା ଚଉ । ମନରେ ନାହିଁ ତାର ଥିତ ॥
ନବ ଭକତ ତାହାଙ୍କର । ମରଣେ ଦଶ ଭକ୍ତି ସାର ॥
ଆଦ୍ୟରେ ଦଶ ଭକ୍ତି ସାର । ପ୍ରାନ୍ତରେ ଦଶ ଭକ୍ତି ଧର ॥
ଷଡ଼ଚକ୍ରର ପରେ ବାସ । ରହୁଛୁ ପରମ ପୁରୁଷ ॥
ସେ ପୁଣ ସର୍ବଘଟେ ଥାଇ । ତାହାଙ୍କୁ କେହି ନ ଚିହ୍ନଇ ॥
ତାହାଙ୍କୁ ଯେ ଜନ ଚିହ୍ନଇ । ଦଶ ଭକତ ସେହୁ ପାଇ ॥
ସେ ରୂପ ଯେହ୍ନୁ ଚିହ୍ନି ନାହିଁ । ଚଉରାଶୀ କାଠିକି କହି ॥
ସେ ପଥେ ଯେହ୍ନୁ ନାହିଁ ପଶ୍ୟ । କି ପ୍ରୟୋଜନ ହୋଇ ଦାସ ॥
କନାଶିଖି ପର୍ଯ୍ୟେ ଫୁଲ । ମଣ୍ଡଳ ଅଟଇ ଅମୂଲ୍ୟ ॥
ସେ ମଧ୍ୟେ କ୍ଷୁଦ୍ର ରୂପ ଧରି । ବିରାଜ ଅଛୁ ସର୍ବ ଶିଖି ॥
ବ୍ରହ୍ମାଣ୍ଡ କୋଟି କୋଟି ସୃଜ । ଯୁଗକୁ ଯୁଗ କେତେ ଖଞ୍ଜ ॥
ଗଗନ ପବନ ଯେ ଜଳ । ପୃଥ୍ୱୀ ଅଟେ ପଞ୍ଚ ଠୁଲ ॥
ଏ ପଞ୍ଚ ରୂପ ଭିଆଇଣ । ଜ୍ୟୋତ ରୂପ ଧରି ଆପଣ ॥
ଗଢ଼ି ନ ଭାଙ୍ଗଇଟି ସେହୁ । ତାହାକୁ କେହି ନ ଚିହ୍ନଇ ॥
ତାହାଙ୍କୁ ଚିହ୍ନେ ଯେଉଁ ଜନ । ଜାଣିବ ସେ ଜନ ସୁପୂର୍ଣ୍ଣ ॥
ତାହାଙ୍କୁ ଗୁରୁ ଅଙ୍ଗ କହୁ । ଶିଷ୍ୟ ହୋଇବ ଖୋଜି ତହିଁ ॥
ଏହା ନ ଚିହ୍ନି ଗୁରୁ ହୁଏ । ସେ ଅଙ୍ଗ ମାଟି-ଘଟ ପ୍ରାୟେ ॥
ଅପୋଡ଼ା ମାଟି-ଘଟ ମତ । କଷ୍ଟରେ ନ ପାରେ ଶିଷ୍ୟ ତ ॥

ତୁମ୍ଭର ପୂର୍ବ ଜନ୍ମ ଫଳ । ସେବିଲ ରାମ ପାଦତଳ ॥
ରାମ ସେବିଲ ମୋ ଚରଣେ । ତୁମ୍ଭେ ଯେ ଲଭିଲ କାରଣେ ॥
ଏ ପଥେ ଦଣ୍ଡେ କ୍ଷଣେ ପୁଣ । ସାଧନ କର ବାଉଜଣ ॥
ଆବର ବାର ଦାସ ଘୋଷ । ବ୍ରଜ ଦିବସ ଚଢ଼ି ରସ ॥
ବେଦର ବାକ୍ୟ ଯେ ପୁରାଣ । ଶ୍ରୀ ଭାଗବତ ଗୀତାରେଣ ॥
ପଢ଼ି ବୁଝିଣ ଯେ ଜାଣିବ । ଏ ରୂପ ବିନୁ ନାହିଁ ଠାବ ॥
ମୁକୁନ୍ଦ ଆନନ୍ଦ ଉତ୍ଥାନ । ଗୋବିନ୍ଦ ବନ୍ଧ ହେ ପବନ ॥
ଏହୁ ଜ୍ୟୋତିବ୍ରହ୍ମ ମୂଳ । ଅବତାର ରୂପ ଯେ ତାଳ ॥
ଅବତାର ଅଂଶରେ ସେହୁ । ସେ ରୂପ ହୃଦେ ଚିହ୍ନୁଥାଉ ॥
ଖେଳୁଥିବ ଅବତାରେ । ମିଶିବ ନିର୍ଗୁଣ ରୂପରେ ॥
ତେବେ ମରଣୁ ନିସ୍ତରିବେ । ଜନମ ହେତୁ ଯେ ପାଇବ ॥
ଜ୍ୟୋତିକି ଗୃହି ଯେ ମରଇ । ଜନ୍ମ ମରଣୁ ନିସ୍ତରଇ ॥
ପାଞ୍ଚଲେ ଜ୍ୟୋତି ସୂକ୍ଷ୍ମେ ଧର । ଦୀନ ଅଚ୍ୟୁତ କହେ ସାର ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ ନବଧା ଭକ୍ତି
କଥନେ ନାମ ଊନବିଂଶ ପଟଳ ।

—:o:—

## ବିଂଶ ପଟଳ

ମୁକୁନ୍ଦ ଅନନ୍ତ ଯେ ଦୁଇ । ମନ ସଂଶୟ ଗଲା ନାହିଁ ॥
ରସ ଗୁଣର ରସ କହି । ପରମ ଗୁରୁ ଅଜ୍ଞା ଦିଅ ॥
ଅନନ୍ତ ମୁକୁନ୍ଦ ହେ ଶୁଣ । ଶ୍ରୀକୃଷ୍ଣ ଲୀଳାରସ ଗୁଣ ॥
ଦୁଇ ଯେ ଦଣ୍ଡ ବ୍ରଜ ଥାଇ । କୁଞ୍ଜରୁ ବିଜେ ଭାବଗ୍ରାହୀ ॥
ଶୟନ ଦୁଇଦଣ୍ଡ କରେ । ଯଶୋଦା ଉଠାଏ କୃଷ୍ଣରେ ॥
ଗୋଧନ ଦୋହନ ଯେ କର । ବେଳ ଯେ ହେଉଛି ଉଚ୍ଛୁର ॥
ମାତା ବଚନେ କୃଷ୍ଣ ଚଳି । ଗାଈ ଦୁହନ୍ତି ବନମାଳି ॥
ଗାଈ ଦୁହିଁଣ କୃଷ୍ଣ ପୁଣ । କରନ୍ତି ସେ ଦନ୍ତଧାବନ ॥

ସ୍ନାହାନ ସାରି ବେଶ ହୋଇ । ଏମନ୍ତେ ଆଠଦଣ୍ଡ ଯାଇ ॥
ଭୋଜନ ଦୁଇଦଣ୍ଡ କରେ । ଦୁଇଦଣ୍ଡ ସେ ଶୟନରେ ॥
ଦଣ୍ଡ ଚାରି ଯେ ଗୋଷ୍ଠେ ସଜ । ସିକା ବାନ୍ଧୁଙ୍କ ଅନ୍ନ ଭୋଗ ॥
ଗାଈ ଚଳାନ୍ତି ଚାରି ଦଣ୍ଡେ । ଶିଙ୍ଗା ମୁରଲୀ ବାଇ ତୁଣ୍ଡେ ॥
ଖେଳନ୍ତି ଏକଦଣ୍ଡ ଯାଇ । ଏକଦଣ୍ଡ ଯେ ଭାର ଥୋଇ ॥
ବିହାର ଏକଦଣ୍ଡ ବନେ । ଦଣ୍ଡେ ଯେ ଜଳକ୍ରୀଡ଼ା ସ୍ଥାନେ ॥
ଏକଦଣ୍ଡ ଯେ ବସି ହରି । ମଧ୍ୟ ଭୋଜନ ଦଣ୍ଡେ କରି ।
ସୂର୍ଯ୍ୟ ପୂଜାରେ ଦଣ୍ଡେ ଯାଏ । ଏମନ୍ତେ ରାଜନୀତି ହୁଏ ॥
ଗୋଧନ ଘେନି ଆସିବାରେ । ଚାରି ଦଣ୍ଡ ଯାଇ ପଥରେ ॥
ଏମନ୍ତେ ସନ୍ଧ୍ୟା ପରବେଶ । ମିଳନ୍ତି ମାତା ପିତା ପାଶ ॥
ସ୍ନାନ ଭୋଜନ ନିତି ସାରି । ଗାଈମାନ ଦୋହନ କରି ॥
ଛ ଦଣ୍ଡ ରାତ୍ର ଭୋଗ ହୋଇ । ସଭା କରନ୍ତି ଗୋପଗୋଈ ॥
କପଟ ନିଦ୍ରା ଦଣ୍ଡ ଚାରି । କୁଞ୍ଜ-କୁଟୀକି ବିଜେ କରି ॥
ଶୟନ ଧୁଇଦଣ୍ଡ ତହିଁ । ବେଶରେ ଚାରିଦଣ୍ଡ ଯାଇ ॥
ଏମନ୍ତେ ଗୃହେ ପରବେଶ । ଶ୍ରୀକୃଷ୍ଣଲୀଳା ଗୁଣ ରସ ॥
ମାନସେ ଏ ରସ ଘୋଷିବ । ଏ ରସମାନ ଘୋଷୁଥିବ ॥
ଗୋପାଳ ମନ୍ତ୍ରକୁ ପଢ଼ିବ । ସମସ୍ତ ଜାଣି ଭୋଗ ଦେବ ॥
କୃଷ୍ଣମନ୍ତ୍ରକୁ ଜପ କର । ଏ ରସେ କଳି ପାପ ହର ॥
ରାଧାରସଲୀଳା ସୁମରଣ । ଶ୍ରୀକୃଷ୍ଣ ମନ୍ତ୍ରକୁ ଜପିଣ ॥
ଗୋଲୋକ ପାଇବ ମରଣେ । ଗୁଣୁ ଯେ ଥିବ ରାଧା ସନେ ॥
ଏ କଳିକାଳ ବଡ଼ ମନ୍ଦ । କୁଟୁମ୍ବ ପୋଷିବାର ଧନ୍ଦ ॥
ଗୁରୁଙ୍କ ପଶ୍ଚାତ ଯେ ବୁଝେ । କୁଟୁମ୍ବ ପାଇଁ ଦୁଃଖେ ଯୁଝେ ।
ତୁମ୍ଭେ ଗୁରୁଙ୍କ ପଶ୍ଚାତ ଚଳ । ଏଣୁ ଯେ ସୁପଥ ପାଇଲ ॥
କୁପଥ କୁଟୁମ୍ବେ ମୁହାଁସ । ଦୀନ ଅଚ୍ୟୁତ କହେ ରସ ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟଖଣ୍ଡେ ରସଗୁଣକଥନେ ଶ୍ରୀକୃଷ୍ଣ ଗୋପଲୀଳା ବିହାରଚରିତେ ନାମ ବିଂଶ ପଟଳ ।

# ଏକବିଂଶ ପଟଳ

ଅନନ୍ତ ମୁକୁନ୍ଦ ଗୋବିନ୍ଦ । ଉତ୍ଥାନ ପବନ ଆନନ୍ଦ ।।
ସ୍ତୁତି ଆମ୍ଭର ଘେନ ମନେ । କରୁଣା କର ଅବଧାନେ ।।
ଠାକୁରାଣୀର ନିତ୍ୟ ରସ । ଗୁଣିବ ତାଙ୍କ ଗୁଣଯଶ ।।
ଠାକୁରାଣୀ ଉଠି ପ୍ରାତଃରେ । ଦନ୍ତଧାବନ ବିଧି ସରେ ।।
ଏମନ୍ତେ ଏକ ଦଣ୍ଡ ଯାଏ । ବେଶଭୂଷଣ ରାଧା ହୁଏ ।।
ବେଶରେ ଏକ ଦଣ୍ଡ ଯାଏ । ନନ୍ଦ ମନ୍ଦିରେ ରାଧା ଥାଏ ।।
ନନ୍ଦର ଘରେ ରନ୍ଧନରେ । ପାଞ୍ଚ ଯେ ଦଣ୍ଡ ତହିଁ ପୂରେ ।।
କୃଷ୍ଣ ଭୋଜନ ଏକ ଦଣ୍ଡ । ଆଠ ଦଣ୍ଡ ଯେ ଲୀଳାଖଣ୍ଡ ।।
ରାଧା ଭୋଜନ ଦଣ୍ଡେ କରେ । ଗୋଷ୍ଠ ବିହାର କୃଷ୍ଣ ଧୀରେ ।।
ରାଧିକା ଦଣ୍ଡେ ଦେଖେ ରହି । ଦଶ ଦଣ୍ଡରେ ଗୃହେ ଯାଇ ।।
ଏଗାର ଦଣ୍ଡେ ସୂର୍ଯ୍ୟ ପୂଜା । ତିନିଦଣ୍ଡ ଯେ ପଥ ଚର୍ଯ୍ୟା ।।
ଦୁଇଦଣ୍ଡ ଯେ ଫୁଲ ତୋଳି । ସୂର୍ଯ୍ୟ ପୂଜନ୍ତି ଗୋପୀ ମିଳି ।।
ଜଳକ୍ରୀଡ଼ା ପଶା ଖେଳରେ । ଛ ଦଣ୍ଡ ଗଲା ଏ ଲୀଳାରେ ।।
ସୂର୍ଯ୍ୟକୁଣ୍ଡେ ଗମନ କରି । ଦି’ଦଣ୍ଡ ପଥରେ ବିହରି ।।
ଦଣ୍ଡେକ ସୂର୍ଯ୍ୟ ପୂଜା କରେ । ସୂର୍ଯ୍ୟ ପ୍ରସାଦ ଦଣ୍ଡେ ହରେ ।।
ଦି’ଦଣ୍ଡେ ଗୃହେ ପରବେଶ । ରାଧା ଠାକୁରାଣୀଙ୍କ ରସ ।।
ଦିବସେ ଏହିମତି ରସ । ଜଗତଜନ ମନେ ତୋଷ ।।
ସନ୍ଧ୍ୟା ଉପରୁ ଦଣ୍ଡେକରେ । ଶୟନ ରାଧାର ମନ୍ଦିରେ ।।
ନିଶି ରନ୍ଧନ ଦଣ୍ଡ ଚାରି । ଭୋଜନ ଏକଦଣ୍ଡ କରି ।।
ତିନିଦଣ୍ଡ ଶୟନ ପୁଣ । ଦି’ଦଣ୍ଡ ଅଭିସାର ଜାଣ । ୨୦ ।
ଦଣ୍ଡେକ ପୁଷ୍ପ ଗୁଚ୍ଛ କରି । କୃଷ୍ଣ ପୂଜାର ବିଧି ସାରି ।।
ଦୁଇଦଣ୍ଡ ଯେ ନୃତ୍ୟ ଗୀତ । କୁଞ୍ଜରେ ଖେଳ ଦଣ୍ଡ ସାତ ।।
ଭୋଜନ ଦଣ୍ଡେ କୃଷ୍ଣ କରେ । ତାମ୍ବୁଲ ଭୁଞ୍ଜନ୍ତି ମୁଖରେ ।।
ଦୁଇଦଣ୍ଡ ଯେ ରତି-ପ୍ରୀତି । ଦି’ଦଣ୍ଡେ ଶୟନ ଶ୍ରୀପତି ।।

କୁଞ୍ଜୁ ଆସନ୍ତେ ଦଣ୍ଡ ଦୁଇ । ଦ୍ୱ'ଦଣ୍ଡ ଘୋର ନିଦ୍ରା ହୋଇ ॥
ଏମନ୍ତେ ନିଶି ଲୀଳା ରସ । ରସିକ ରାଧା ଗୁଣ ଘୋଷ ॥
ରସଗୁଣର ରସ ଏହୁ । ଠିକେ କହିଲି ରସ ଦୁଇ ॥
ଏଥି ବହୁତ ରସ ଅଛି । ଯେ ଅବା ପାରେ ରସ ପୁଚ୍ଛି ॥
ଏ ତ ସଗୁଣ ଭକ୍ତ ରସ । ସଗୁଣ ନିର୍ଗୁଣ ଦ୍ୱ'ରସ ॥
କୃଷ୍ଣ ଭଣ୍ଡାରେ ଦୁଇ ରସ । ଘୋଷନ୍ତି ସାଧୁ ସନ୍ଥ ଦାସ ।
ନିର୍ଗୁଣ ଏକ ଏକ ଘୋଷେ । ସଗୁଣେ ସର୍ବଜନ ପଶେ ॥
ସଗୁଣ ନିର୍ଗୁଣ ସାଧିବ । ତେବେ ମନୁ ସଂଶୟ ଯିବ ॥
ବେନି ଚକ୍ଷୁ ଥିଲେ ଯେମନ୍ତ । ନିର୍ଗୁଣ ସଗୁଣ ଦ୍ୱ'ମତ ॥
ଗୁଣ ଗୋଟିଏ ଶିଖିଥାଇ । ଏକା ଆଖି ଯେ ତାକୁ କହି ॥
ରାଧା ଭଜନ୍ତି ହେ ମୁକୁନ୍ଦ । ଅନନ୍ତ ଦୁଇ ଭକ୍ତ ବନ୍ଦ ॥
ରାଧା ମନ୍ତ୍ରକୁ ସୁମରିବେ । ଦୂତୀ ମନ୍ତ୍ରକୁ ଭଜୁଥିବେ ॥
ଶ୍ରୀରଁ ବୀଜେ ଅଟେ ରାଧା ମନ୍ତ୍ର । ମାନସ ସେବା କର ତନ୍ତ୍ର ॥
ଶ୍ରୀରଂ ବୀଜକୁ ମନେ ଧରି । ଗୋପାଳ ମନ୍ତ୍ର ଷଡ଼ କରି ॥
ଅନନ୍ତ ଦୂତୀ ମନ୍ତ୍ର ଧର । ମାନସ ସେବା ହୃଦେ କର ॥
ରାଧା ଦୂତିକା ଗୁଣମାନ । ତୁମ୍ଭ ଅଂଶରେ ଜନ୍ମ ଘେନ ।
କହୁ ଯେ ଦିନ କଳି ମଧ୍ୟ । ଲୀଳା କରିବ ତୁମ୍ଭେ ଦୁଇ ॥
ଏମନ୍ତ ଭଜନ ବୃତାନ୍ତ । ତୁମ୍ଭ ଅଙ୍ଗରୁ ପାପ ମୁକ୍ତ ॥
ଏ ପୁଣ୍ୟେ ପାଞ୍ଚ ପୀଢ଼ି ଅଂଶ । ତୁମ୍ଭର କରିବେ ଉଦ୍ଧାସ ॥
ସେଠାରୁ ଅଂଶ ଯେ ମିଳନ । ହୀନ ଜାତିରେ ଥିବେ ପୁଣ ॥
ଅକୁଳ କୁଳୀନ ହୋଇବେ । ଧୂମ ମଦରସରେ ମାତିବେ ॥
ଗଞ୍ଜା ବଜର ଭାଙ୍ଗ ଖାଇ । ଅସୁ ଉର୍ଦ୍ଧ୍ୱବାରେ ଯେ ବାଇ ॥
ସ୍ଲେଚ୍ଛକାର ବେଶ ଯେ ଧରିବେ । ବୈଷ୍ଣବ ଭେକ ଛାଡ଼ିଦେବେ ॥
ଅମେଧ ଅନ୍ନ ଯେ ଭକ୍ଷିବେ । ସୁସ୍ଥାନେ ରାନ୍ଧ ନ ଖାଇବେ ॥
ସୁକର୍ମ ପଥରୁ ଏଡ଼ିଣ । ପାଣ ପଠାଣ ମିଳି ପୁଣ ॥
ଅମେଧ ଆଚାର କରିବେ । ଅଙ୍ଗୀକେ ବୀଜ ଭଣ୍ଡାଇବେ ।

ଚବିଶ ଗୋପାଳ ହେ ଶୁଣ । ରାମ ଭରଥ ଯେତେ ଗଣ ॥
ବଳ ଯାଦବ ଧର୍ମ ଦାସ । ବିଷ୍ଣୁ ନନ୍ଦ ଯେ ଶୁଣ ରସ ॥
ଯନ୍ତ୍ର ମନ୍ତ୍ର ଯେ ତନ୍ତ୍ର ବିଧି । ରସ ପୁଙ୍କେ ଥିବ ଶୋଧି ॥
ଅବାଡ଼ ସୁଷ୍ମା ଜୋଗାଡ଼ ଲୟେ । ସମାଧି ଭକ୍ତ ଧ୍ୟାନ ଧ୍ୟାୟେ ॥
ଏ ଅଷ୍ଟଗୁଣ ସାଧୁଥିବ । ନିଶ୍ଚିନ୍ତ ସ୍ଥାନେ ବସିଥିବ ॥
ଅଷ୍ଟାଙ୍ଗ କହିଲୁ ନିସ୍ତାର । ପାରିଲେ ଏହି ପଥ ଧର ॥
ସକଳ ଶାସ୍ତ୍ର ଶ୍ରୁତି ଭେଦ । ଏ ଅଷ୍ଟରସ ସାଧୁ ପଦ ॥
ଅଚ୍ୟୁତ ବଚନ ପ୍ରମାଣ । ଗୋପାଳେ ଦ୍ୱେତ୍ରୁଜର ଘେନ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ ରାଧାକୃଷ୍ଣ ମାଠ ଚରିତ ବର୍ଣ୍ଣନେ ନାମ ଏକବିଂଶ ପଟଳ ।

---

## ଦ୍ୱାବିଂଶ ପଟଳ

ମୁକୁନ୍ଦ ଅନନ୍ତ ଗୋବିନ୍ଦ । ସୁଦାମ ବାଳକ ଆନନ୍ଦ ॥
ପବନ ଉତ୍ଥାନ ମଥୁର । କିରୂପେ ସେବା ମନେ ଧର ॥
ମାନସ ସେବା ଭକ୍ତମାନ । କି ରୂପେ ଧରିବ ଏ ମନ ॥
ଶୁଣ ହେ ରୂପ ବେଶ ଗୁଣ । ସେବା କରନ୍ତି ସଖୀଗଣ ॥
ପ୍ରଥମେ ଆଦ୍ୟ ପ୍ରହରରେ । ଚମ୍ପା ପୁଷ୍ପ ଗୁନ୍ଥି ହାରରେ ॥
ରାଧା ସଙ୍ଗତେ ସିଧା ଘେନ । କୃଷ୍ଣ ବେଶକୁ ଦ୍ୟନ୍ତି ବେନ ॥
ଦ୍ୱିତୀୟ ପ୍ରହର ଯେ ଶୁଣ । ନାଗେଶ୍ୱର ପୁଷ୍ପ ଗୁନ୍ଥିଣ ॥
ରାଧାସଙ୍ଗତେ ଚନ୍ଦ୍ରା ସଖୀ । କୃଷ୍ଣର ବେଶ ଦେଖି ସୁଖୀ ॥
ତୃତୀୟ ପ୍ରହର ହରଷେ । ମାଧବୀ ପୁଷ୍ପ ଗୁନ୍ଥି ରସେ ॥
ରାଧା ଚନ୍ଦ୍ରାବଳୀ ମିଶିଣ । କୃଷ୍ଣର ସେବା ହରଷେଣ ॥
ଚତୁର୍ଥ ପ୍ରହରେ ହରଷ । ଗୁନ୍ଥନ୍ତି କଦମ୍ବ ଯେ ପୁଷ୍ପ ॥
ମଦନା ସୁନ୍ଦରୀ ଯେ ସଖୀ । ବେଶ କରିବା ରାଧା ସୁଖୀ ॥

ପଞ୍ଚମ ପ୍ରହର ହରଷେ । ଗୁନ୍ଥନ୍ତି ବଉଳଜାତି ପୁଷ୍ପେ ॥
ରାଧା ସଙ୍ଗତେ ମଧୁବନ୍ତୀ । କୃଷ୍ଣଙ୍କୁ ବେଶ ଯେ କରନ୍ତି ॥
ଷଷ୍ଠମ ପ୍ରହର ହେ ପୁଣ । ଶ୍ରୀମନ୍ତୀ ସଖୀ ରାଧା ପୁଣ ॥
ଲବଙ୍ଗ ପୁଷ୍ପ ଗୁନ୍ଥି ହାର । କୃଷ୍ଣ ବେଶ ଯେ ମନୋହର ॥
ସପତ ପ୍ରହର ହୁଅନ୍ତେ । କୁନ୍ଦ ପୁଷ୍ପ ଯେ ମାଳ ଗୁନ୍ଥେ ॥
ଶଶୀରେଖା ଯେ ଗୋପୀ ଚନ୍ଦ୍ର । କୃଷ୍ଣଙ୍କୁ ବେଶ ଯେ କରଇ ॥
ଅଷ୍ଟମ ପ୍ରହର ହୁଅନ୍ତେ । ବନମାଳୀ ଗୁନ୍ଥନ୍ତି ହସ୍ତେ ॥
ହରପ୍ରିୟା ଯେ ଗୋପୀ ରାଧା । ବେଶ ଯେ କରନ୍ତି ସର୍ବଦା ॥
ରାଧା ପ୍ରଥମ ପ୍ରହରେଣ । ସେବା କରନ୍ତି ସଖୀଗଣ ॥
ଦ୍ୱିତୀୟ ପ୍ରହର ହୁଅନ୍ତେ । ଚନ୍ଦ୍ରାବଳୀର ସଖୀ ଯେତେ ॥
ତୃତୀୟ ପ୍ରହର ହୁଅନ୍ତେ । ଚନ୍ଦ୍ରାବଳୀର ସଖୀ ଯେତେ ॥
ଚତୁର୍ଥ ପ୍ରହରେ ଯେ ପୁଣ । ମଦନ ସଖୀ ଯେତେ ଗଣ ॥
ପଞ୍ଚମ ପ୍ରହର ପଶନ୍ତେ । ମଧୁବନ୍ତୀର ସଖୀ ଯେତେ ॥
ଷଷ୍ଠମ ପ୍ରହରେ ଯେ ପୁଣ । ଶ୍ରୀମନ୍ତୀ ସଖୀ ଯେତେ ଗଣ ॥
ସପତ ପ୍ରହର ହୁଅନ୍ତେ । ଶଶୀରେଖାଙ୍କ ସଖୀ ଯେତେ ॥
ଅଷ୍ଟମ ପ୍ରହର ହୋଇଲେ । ହରପ୍ରିୟା ଗଣ ମିଳିଲେ ॥
କୃଷ୍ଣଙ୍କୁ ରାଧା ବେଶ କରି । ଶୟନ କରି ମନହରି ॥
ନିତି ଦିବସ ସେବା ରସ । ଥରେ ନ ଛାଡ଼େ କୃଷ୍ଣ ପାଶ ॥
ଖୋଳ କର୍ତ୍ତାଳ ବୀଣା ଆଉ । ଗାଆନ୍ତି ଗୁଣରେ ମଙ୍ଗଳ ॥
ଡମ୍ଫ ଝଞ୍ଜଣି ଯେ ଡମ୍ବୁର । ବିବିଧ ବାଦ୍ୟ ନାଦ ସ୍ୱର ॥
ମିଳି ଗାଆନ୍ତି ମନୋହର । ଷୋଳ ସହସ୍ର ସଙ୍ଗତର ॥
ଏ ଅପସରଙ୍କୁ ଧାଇବ । ପଦ ଆଳାପ ମିଶାଇବ ॥
ଉତ୍ଥାନ ସେବା ପ୍ରଥମରେ । ପବନ ଥିବ ସଙ୍ଗତରେ ॥
ଭରଥ ଦାସ ସଙ୍ଗେ ଘେନ । ଶୟନ ସେବା କର ଜନ ॥
ବାଳକ ବୃନ୍ଦାବନ ଦୁଇ । ଧରମୁ ଦାସ ସଙ୍ଗେ ନେଇ ॥
ସେବା କରିବ ଜନ ଜଣ । ଦ୍ୱିତୀୟ ପ୍ରହର ଯେ ପୁଣ ॥

ତୃତୀୟ ପ୍ରହର ଯେ ସେବା । ମଧୁ ମଥୁର ଧିଆଇବା ॥
କୃଷ୍ଣ ଦାସଙ୍କୁ ସଙ୍ଗତର । ଗାୟନ ବାଧି ସେବା କର ॥
ଚତୁର୍ଥ ପ୍ରହର ମିଳନ । ସୁଦାମ ବସ୍ତ୍ର ଚନ୍ଦନ ଜଣ ॥
ବଳ ଯାଦବ ଦାସ ଥିବ । ଗାୟନ ସେବାରେ ମିଳିବ ॥
ପଞ୍ଚମ ପ୍ରହର ଯେ ଦୋଷ । ସୁଦାମ ଆନନ୍ଦ ହରଷ ॥
ଦକ୍ଷିଣ ଚନ୍ଦ୍ର ଦାସ ସଙ୍ଗ । ଗାୟନ ସେବା କର ରଙ୍ଗ ॥
ଯାଦବ ବୃନ୍ଦାବନ ଦୁଇ । ଷଷ୍ଠମ ପ୍ରହର ଯେ ହୋଇ ॥
ନିରଞ୍ଜନ ଯେ ଥିବ ସଙ୍ଗେ । ଗାୟନ ସେବା କର ରଙ୍ଗେ ॥
ସପତ ପ୍ରହର ହୁଅନ୍ତେ । ନନ୍ଦ କନ୍ଦ ବେନି ମିଶନ୍ତେ ॥
କମାର ରାମ ସଙ୍ଗତରେ । ଗାୟନ ସେବା କର ଧୀରେ ॥
ଅଷ୍ଟମ ପ୍ରହର ସମ୍ପୂର୍ଣ୍ଣ । ମୁକୁନ୍ଦ ଅନନ୍ତ ଦୁ'ଜଣ ॥
ରାମ ଦାସ ଯେ ସେବା ଧୀରେ । ମିଳନ ଅଚ୍ୟୁତ ସଙ୍ଗରେ ॥
ବଳୀ ରାମ ଯେ ଥିବ ମିଳି । ଗାୟନ କର ରସକେଳି ॥
ସମସ୍ତ ରସ ଯେ ସମ୍ପୂର୍ଣ୍ଣ । ଅଚ୍ୟୁତ ପଚିଶ ଯେ ଜାଣ ॥
ଏ ଚନ୍ଦ ସେବା ମନେ ଧର । ବ୍ରଜଭୁବନ ମଧ୍ୟେ କର ॥
ଷୋଳ ସହସ୍ର ଅଚ୍ୟୁତର । ରସିକ ବାର ସସ୍ର ସାର ॥
ଯୋଗାରୂଢ଼ ସ୍ୱର ସହସ୍ର । ଷୋଳ ସହସ୍ର ସଙ୍ଗେ ମିଶ ॥
ଅଷ୍ଟମ ପ୍ରହରର ରସ । ଚବିଶ ଗୋପାଳ ଦେ ଘୋଷ ॥
ଚବିଶ ମୂଳେ ଷୋଳ ସହେ । ମିଳି କରିବ ରସ ଅଗ୍ରେ ॥
ଏମନ୍ତ ସଖୀ ସେବା ରସ । ରାଧା କୃଷ୍ଣର ଗୁଣ ଘୋଷ ॥
ବାର ଗୋପାଳ ରହାସର । ଯୋଗାରୂଢ଼ ଯେ ବାର ସାର ॥
କର୍ଣ୍ଣଦାସ ଯେ ଯୋଗାରୂଢ଼ । ତାରିବ ଗୋପକୁଳ ମୂଢ଼ ॥
ରହାସ ଦାସ ବାର ତୁମ୍ଭେ । ତାରିବ ସଂସାର ଆରମ୍ଭେ ॥
ଗୋପାଳ କୁଳକୁ ତାରିବ । ରହାସ ସଙ୍ଗେ ମିଶାଇବ ॥
ସୁରଜାତ ଅଠର ପାଟ । ଛତିଶ କୁଳୀ ବର୍ଣ୍ଣ ଘାଟ ॥
ତୁମ୍ଭଙ୍କୁ ଦେଖି ତୋଷ ହେବେ । ଅଷ୍ଟ ରତନ ଯାଚ ଦେବେ ॥

ହରି ବଣିଜ କର ସାର । ରାଧା କୃଷ୍ଣ ଗୁଣ ସୁମର ॥
ଏ ଅଷ୍ଟ ପ୍ରହର ଗୁଣିମ । ଗାୟନ କର ମନୋରମ ॥
ସଂସାର ସାର ହରି କଥା । ଆଉ ଯେତେକ କଥା ମିଥ୍ୟା ॥
ଅଚ୍ୟୁତ କଥା ମନେ ଧର । ଦ୍ୱାଦଶ ଗୋପାଳେ ସୁମର ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ବୃନ୍ଦାବନ ଖଣ୍ଡେ
ଅଷ୍ଟ ପ୍ରହର ସଖୀ ସେବା କଥନେ
ନାମ ଦ୍ୱାବିଂଶ ପଟଳ ।

---

## ତ୍ରୟୋବିଂଶ ପଟଳ

ମୁକୁନ୍ଦ ଅନନ୍ତ ଧରମ । ଆଜ୍ଞା ଯେ କଲେ ଗୁରୁବ୍ରହ୍ମ ॥
କେବଣ ଦଗେ ଗୋପୀ କେତେ । କହିବା ଆମ୍ଭଙ୍କୁ ଯୁଗତେ ॥
ପୂର୍ବ ଦଗର ଗୋପୀମାନ । ଶୁଣ ହେ ମଥୁରା ସବନ ॥
ଲଳିତା ବୃନ୍ଦା ମଧୁବନ୍ତୀ । ଚମ୍ପା ଦମୟନ୍ତୀ ମଦନାତି ॥
ସୁରେଖା ତ୍ରିପୁରା ଯେ ପୁଣ । ଅଛନ୍ତି ଏ ଅଷ୍ଟ ଦଳେଣ ॥
ଷୋଳ ଯେ ଲକ୍ଷ ଗୋପୀ ତହିଁ । ଅଷ୍ଟ ନାୟିକା ସଙ୍ଗେ ରହି ॥
ସୁମର ଗୋବିନ୍ଦ ହେ ବନ୍ଧୁ । ଐଶାନ୍ୟ କୋଣର ପ୍ରତ୍ୟକ୍ଷ ॥
ସୁଭଦ୍ରା ରଙ୍ଗଦେବୀ ଦୁଇ । ଅହଲ୍ୟା ତାରା ଗୋପୀ ତହିଁ ॥
ତିଲୋତ୍ତମା ମାଳତୀ ବେନି । ସୁଆଦି ଜୟେ ସଖୀ ଯେନି ॥
ସୃତ ଯେ ଲକ୍ଷ ସଙ୍ଗେ ତହିଁ । ଈଶାଣ କୋଣେ ସେବା ରହି ॥
ଗୋବିନ୍ଦ ବାଳକ ହେ ଶୁଣ । ଉତ୍ତରେ ଯେତେ ଗୋପୀଗଣ ॥
ଧନ୍ୟା ଶ୍ରୀମତୀ ଶଶୀରେଖା । ଦୂତିକା ସଙ୍ଗେ ଯେତୁ ସଖା ॥
ସୁଶୀଳା ଗୋପୀଛନ୍ତି ତହିଁ । ଷଡ଼ ଯେ ଲକ୍ଷ ସଙ୍ଗ ହୋଇ ॥
ଶୁଣ ହେ ଯାଦବ ଗୋବିନ୍ଦ । ବାୟବ୍ୟ କୋଣ ଗୋପୀବୃନ୍ଦ ॥

ସର୍ବ ସୁନ୍ଦରୀ ଛନ୍ତି ତହିଁ । କୁମାରୀ କାମ ସଖୀ ତହିଁ ।।
ମେନକା ବିଦ୍ୟାଧରୀ ଛନ୍ତି । ରମ୍ଭା ସୁଷମା ଆଦି ଛନ୍ତି ।।
ଶାକାମ୍ବରୀ ଯେ ଛନ୍ତି ତହିଁ । ସୃଷ୍ଟ ଲକ୍ଷ ଯେ ଗୋପ ଗୋଇ ।।
ଶୁଣ ବାଳକ ବୃନ୍ଦାବନ । ପଶ୍ଚିମ ଦଗ ଗୋପୀଜନ ।।
ବିଶାଖା ଗୋପୀ ଛନ୍ତି ତହିଁ । କମଳା ଭୃଙ୍ଗୁସା ଯେ ଦୁଇ ।।
ଜାମ୍ବବତୀ ଯେ ସତ୍ୟଭାମା । ରୁକ୍ମିଣୀ ଲକ୍ଷ୍ମୀ ଯେ ଉତ୍ତମା ।।
ଶତଶ୍ରିୟା ଶାରଦା ଛନ୍ତି । ବିମଳା ଗୋପୀ ବିହରନ୍ତି ।।
ପାଞ୍ଚ ଯେ ଲକ୍ଷ ସଖୀଗଣ । ଅଛନ୍ତି ପଶ୍ଚିମ ଦଗେଣ ।।
ଶୁଣ ପବନ ମନ ଦେଇ । ନୈର୍ଋତ କୋଣ ରସ ବହି ।।
ଅହଲ୍ୟା ତାରା ମନ୍ଦୋଦରୀ । ଶଚୀ ରେବତୀ ବିହରି ।।
ଦ୍ରୌପଦୀ କାନ୍ତମାଳା ଛନ୍ତି । ସୁକୁମାରୀ ଯେ ବିହରନ୍ତି ।।
ଷଡ଼ ଯେ ଲକ୍ଷ ଗୋପୀଗଣ । ଅଛନ୍ତି ନୈର୍ଋତ ଦଗେଣ ।।
ଶୁଣ ହୋ ରାମଭଦ୍ର ଦାସ । ଧରମୁ ବିଷ୍ଣୁ ବଂଶ ଘୋଷ ।।
ଦକ୍ଷିଣ ଦଗେ ଯେତେ ସଖୀ । ଅଛନ୍ତି କେ ପାରିବ ଲେଖି ।।
ପଦ୍ମା ଯେ ତିଲୋତ୍ତମା ତହିଁ । ବିଦ୍ୟାଧରୀ ଅଛନ୍ତି ରହି ।।
ଅର୍ଦ୍ଧପୂର୍ଣ୍ଣା ଚନ୍ଦ୍ରଲା ବେନି । ଶାକାମ୍ବରୀ ମଦାଳସୀ ଘେନି ।।
ଦଶ ଯେ ଲକ୍ଷ ଗୋପୀଗଣ । ଅଛନ୍ତି ଦକ୍ଷିଣ ଦଗେଣ ।।
ଦକ୍ଷିଣ ଦଗର ରଚନା । ରାମ କୁମ୍ଭାର ମନେ ଘେନ ।।
ଶ୍ରୀମତୀ ମାଳତୀ ଯେ ଦୁଇ । ରତନା ମାଙ୍କୁଳୁ ଯେ ଦୁଇ ।।
ସୁଗନ୍ଧା ଚନ୍ଦ୍ର ଚନ୍ଦନ ଛନ୍ତି । ଦକ୍ଷିଣା ଗୋପୀ ବାହାରନ୍ତି ।।
ପରମ ଲକ୍ଷ୍ମୀ ଛନ୍ତି ତହିଁ । ପରମାନନ୍ଦ ଯୋଗ ସେହି ।।
ଏ ଅଗ୍ନି କୋଣର ବିସ୍ତର । ଏ ଗୋପୀଗଣ ଧ୍ୟାନ କର ।।
ଷଡ଼ ଯେ ଲକ୍ଷ ପରିବାରୀ । କୃଷ୍ଣର ସେବାମାନ କରି ।।
ସତ ତିରିଶ ଲକ୍ଷ ଗୋପୀ । କୃଷ୍ଣ ସେବାରେ ସେ ଚିତ୍ତରୋପି ।।
ଚଉଷଠୀ ଯେ ଗୋପୀସାର । ଏ ଅଷ୍ଟ କୋଣରେ ବିହାର ।।
ଗୋପୀ ଭାବରେ ସେବାକରି । ଶ୍ରୀକୃଷ୍ଣ ସେବା ଯେ ବିସ୍ତରି ।।

ଧ୍ରୁବ ପ୍ରଥମ ଦଳେଣ । କୁଙ୍କୁମ ବର୍ଣ୍ଣ ତାଙ୍କ ବର୍ଣ୍ଣ ॥
ଗନ୍ଧ ଚନ୍ଦନ ସେବା କରି । କୃଷ୍ଣର ସେବା ମନେ ଧରି ॥
ଉତ୍ତର ଦଳେ ସଖୀ ଗଣ । ଧନ୍ୟା ନାମେ ଯେ ଗୋପୀ ପୁଣ ॥
ବୈଡୂର୍ଯ୍ୟ କାନ୍ତି ତାହାଙ୍କର । ରତନ ଝରି ଶୋଭା ସାର ॥
ସେବ୍ୟା ଯେ ବାୟବ୍ୟ କୋଣରେ । କର୍ପୂର ପଞ୍ଚାମୃତ କରେ ॥
ଖଣ୍ଡ କ୍ଷିର ଅମୃତ ଦେଇ । ଶ୍ରୀକୃଷ୍ଣ ସେବାରେ ସେ ରହି ॥
ବିଶାଖା ପଶ୍ଚିମ ଦଳରେ । ବୀଣା ଗାୟନ ସେବା କରେ ॥
ଅହଲ୍ୟା ନୈର୍ଋତ କୋଣରେ । ତାମ୍ବୁଳ ସେବା ସେହୁ କରେ ॥
ପଦ୍ମା ଯେ ଦକ୍ଷିଣ ଭାଗରେ । ଅରୁଣ ବର୍ଣ୍ଣ ଶୋଭା କରେ ॥
ଅମୃତ ଗୋଟିକା ଭୁଞ୍ଜନ୍ତି । ପକ୍ଷୀ ଚାମର ଯେ ଢାଳନ୍ତି ॥
ଶ୍ରୀମତୀ ଅଗ୍ନି ଯେ କୋଣରେ । ମୃଦଙ୍ଗ ତାଳ ଧରି କରେ ॥
ଶୁକ୍ଳସୀ ସଙ୍ଗେ ଗୀତ ଗାଇ । ଶ୍ରୀକୃଷ୍ଣ ସେବାରେ ସେ ରହି ॥
ଗୋପୀଙ୍କ ଭାବ ମନେ ଧରି । ସେବା କରିବ ମନ୍ତ୍ର ସ୍ମରି ॥
ମୁକୁନ୍ଦ ଅନନ୍ତ ଯେ ଦୁଇ । ଗୁରୁ ବନ୍ଦନ ସେବା ଧ୍ୟାଇ ॥
ଉଦ୍ଧାନ ପବନ ଯେ ବେନି । ନୈର୍ଋତ କୋଣ ସେବା ଘେନି ॥
ଆନନ୍ଦ ଗୋବିନ୍ଦ ଯେ ଦୁଇ । ଉତ୍ତର ଦଳେ ସେବା ଧ୍ୟାଇ ॥
ବାୟବ୍ୟ ଦଳ ସେବା ପୁଣ । ମଧୁଶ୍ରୀ ଆଶ୍ରେ କରେ ପୁଣ ॥
ପଶ୍ଚିମ ଦଳ ସେବା କହି । ଆନନ୍ଦ ବଂଶୀବ ରହି ॥
ନୈର୍ଋତ ଦଳ ସେବାମାନ । ସୁଦାମ ମନେ ତୁମ୍ଭେ ଘେନ ॥
ଯାଦବ ବୃନ୍ଦାବନ ଦୁଇ । ଦକ୍ଷିଣ ସେବା କର ଯାଇ ॥
ବାଳକ ବୃନ୍ଦାବନ ଦାସ । ଅଗ୍ନି କୋଣରେ ସେବା ଘୋଷ ।
ବସୁ ଯେ ଅଗ୍ନି କୋଣ ସେବ । ଦ୍ୱାଦଶ ଗୋପାଳ ସେବିବ ।
ଖୋଳ କଂସାଳ ରାସ ଲୀଳା । ଆନନ୍ଦ ରସେ ହୋଇ ଭୋଳା ॥
ଗୋପାଳ ମନ୍ତ୍ର ସେବା କରି । ଷୋଡ଼ଶ ମନ୍ତ୍ରକୁ ସୁମରି ॥
ଆଠ ଦୁଗୁଣେ ଷୋଳ ହୋଇ । ଅଠ ଦଳଅଠେ ଷୋଳ କହି ॥
ହରେ ଶବଦ ପୂର୍ବେ ବସେ । ରାମ ଶବଦ ଈଶାନ୍ୟେ ସେ ॥

କୃଷ୍ଣ ଶବଦ ଉତ୍ତରେଣ । ଶ୍ୟାମ ଶବଦ ବାୟୁବ୍ୟେଣ ॥
ହ୍ରୀଁ ଯେ ପଶ୍ଚିମ ଭାଗରେ । ଶ୍ରୀଁ ଯେ ନୈର୍ଋତ ଦଗରେ ॥
କ୍ଲୀଁ ଯେ ଦକ୍ଷିଣରେ ବସେ । ଦାମ ଯେ ଅଗ୍ନି କୋଣରେ ସେ ॥
ନନ୍ଦ ପୂରୁବେ ପରକାଶ । କନ୍ଦ ଈଶାନ କୋଣେ ଘୋଷ ॥
ବନ ଉତ୍ତର ଦଗେ ପୁଣ । ଧର୍ମ ଯେ ବାୟୁବ୍ୟରେ ଜାଣ ॥
ସାଧୁ ପଶ୍ଚିମ ଦଗେ ରହେ । ମଧ୍ୟ ନୈର୍ଋତ ଦଗ କହେ ॥
କାମ ଦକ୍ଷିଣ ଦଗେ ବସେ । ବ୍ରହ୍ମ ଅଗ୍ନି କୋଣେ ପ୍ରକାଶେ ॥
ଷୋଡ଼ଶ ମନ୍ତ୍ର ଜପ କରେ । ସତ ଦୟା ଯେ କ୍ଷମା କରେ ॥
ଶାନ୍ତ ଚତ୍ତରେ ରହେ ମନ । ପର ଦାରାରେ ନାହିଁ ଧ୍ୟାନ ॥
ସେମାନେ ଏ ସ୍ଥଳ ଲଭନ୍ତ । ଦେହାନ୍ତେ ସେବାରେ ରହନ୍ତ ॥
କ୍ଲୀଁ ଯେ ପୂର୍ବେ ପରକାଶ । କୃଷ୍ଣାୟ ଐଶାନ୍ୟରେ ଘୋଷ ॥
ଗୋବନ୍ଦାୟ ଯେ ଉତ୍ତରେଣ । ଗୋପୀଜନ ଯେ ବାୟୁବ୍ୟେଣ ॥
ବଲ୍ଲ ପଶ୍ଚିମ ଦଗେ ବସେ । ଭାୟ ଯେ ନୈର୍ଋତେ ପ୍ରକାଶେ ॥
ସ୍ୱାହା ଦକ୍ଷିଣ ଦଗେ ପୁଣ । ନମଃ ଅଗ୍ନି କୋଣେଣ ଜାଣ ॥
ନମ ବୋଲି ଯେ ଦଣ୍ଡବତ । ସ୍ୱାହାରେ ମଣୋହି ସଂଯୁତ ॥
ଆଠ ଦଗୁଣେ ଯେ ଅଠର । ଗୋପାଳ ମନ୍ତ୍ରଙ୍କର ସାର ॥
ଅନନ୍ତ ମୁକୁନ୍ଦ ବାରଟି । ଗୋପାଳ କୁଳ ଲବଣଟି ॥
ମୂଢ଼ ଅଟନ୍ତି ଗୋପକୁଳ । ରାମ ଭରଥ କର ମୂଳ ॥
ଧରମୁ ବଷ୍ଟୁ ବନ ପଞ୍ଚ । ଗୋପାଳ କୁଳେ ତୁମ୍ଭେ ଉଚ ॥
କମାର କୁମ୍ଭାର ଯେ ରାମ । ଦକ୍ଷିଣ ଚନ୍ଦ୍ର ଯେ ଉତ୍ତମ ॥
ଗୋପାଳ କୁଳେ ବୁଝାଇବ । ରଯ ଗୁଣକୁ ଶିଖାଇବ ॥
ଅତ ଶ୍ରଦ୍ଧାରେ ଯେଉଁ ନର । ମତ୍ସ୍ୟ ଯେ ଖାଇବ ମୁଖର ॥
ଧୂମ ଗଞ୍ଜାରେ ଯାର ଚତ୍ତ । ଗେ୍ରାଧ କରିବ ପର ବତ୍ତ ॥
ପର ରମଣୀ ଯେ ହରିବ । ମୁଖରେ ମିଛ ଯେ କହିବ ॥
ଏ ଗ୍ରନ୍ଥ କରିବ ଗୁପତ । ଫେଡ଼ିଲେ ବପତ୍ତି ପଡ଼େ ତ ॥
ମାତା ପିତାଙ୍କୁ ଯେ ସେବବ । ଗୁରୁଙ୍କ ଯେ ସେବା କରିବ ॥

ମୌଷ୍ଟବ କରି ଅନ୍ନ ଦେବ । ପ୍ରସ୍ତାରୁ ସ୍ନାହନ କରିବ ॥
ଅତଥି ପୂଜା ଯେ କରିବେ । ମୁଖରେ କୃଷ୍ଣ ମନ୍ତ୍ର ଥିବ ॥
ଦୁର୍ଭିକ୍ଷେ ଅନ୍ନ ଦାନ ଦେବ । ଏ ଗ୍ରନ୍ଥ ତାହାକୁ କହିବ ॥
ଅଚ୍ୟୁତ ବଚନ ଯେ ସାର । ଚବଣ ଗୋପ ମନେଧର ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟଖଣ୍ଡେ ରସ ଗୁଣ
କଥନେ ନାମ ତ୍ରୟୋବିଂଶ ପଟଳ ।



## ଚତୁର୍ବିଂଶ ପଟଳ

ମୁକୁନ୍ଦ ଅନନ୍ତ ପାମର । ପରମ ଗୁରୁ କୃପାକର ॥
ଗୋପୀଙ୍କ ମହିମା ଶୁଣିଲୁ । ଗୋପାଳ ନାମ ନ ଜାଣିଲୁ ॥
ଶୁଣ ହୋ ଗୋପର କୁମର । ମୁକୁନ୍ଦ ହେତୁ ମନେ ଧର ॥
ପୂରୁବ ଦିଗରେ ଗୋପାଳ । ଉଦ୍ଧବ ସଙ୍ଗେ ଯୂଥ ମେଳ ॥
ସତର ସହସ୍ର ଯେ ଯୂଥ । କୃଷ୍ଣର ଲୀଳାରେ ଉନ୍ମତ୍ତ ॥
ରୋହିଣୀ ଗାଈ ତହିଁ ସାର । ସାତଶ ପଦ୍ମ ଧେନୁ ଆର ॥
କାନନ ବନ ଯେ ଦିଗରେ । କୃଷ୍ଣ ଗୋପାଳ ଲୀଳା କରେ ॥
ଈଶାନ୍ୟ କୋଣର ଗୋପାଳ । ସାତ୍ତ୍ୱିକ ଅଟେ ମୋକ୍ଷ ମୂଳ ॥
ସୁରଭି ନାମେ ଧେନୁ ତହିଁ । ସତର ଖେଉଣୀ ସେ ଗାଈ ॥
ଖଦିର ବନରେ ବିହରି । କୃଷ୍ଣ ଗୋପାଳ ମିଳିକରି ॥
ଶିଙ୍ଗା ଯେ ବେଣୁ ବଜାବନ୍ତି । ସହସ୍ରେ ଗୋପାଳ ଅଛନ୍ତି ॥
ଉତ୍ତର ଦିଗ ଗୋପସୁତ । ଅଛନ୍ତି ଏମନ୍ତ ଭାବେ ତ ॥
ବହୁଳା ନାମେ ଗାଈ ସାର । ତେର ଖେଉଣୀ ସଙ୍ଗେ ତାର ॥
ବଂଶ ଯେ ବନରେ ରହନ୍ତି । କୃଷ୍ଣର ନିଜ ନାମ ଚନ୍ଦ୍ର ॥
ଯାଦବ ଗୋପାଳ ଯେ ସାର । ତିନ ସହସ୍ର ତା ସଙ୍ଗର ॥
ବାୟବ୍ୟ କୋଣ କଥା ଶୁଣ । ଶ୍ରୀକୃଷ୍ଣ ତହିଁରେ ଅର୍ପଣ ॥

ଅବତାର ଯେ କୃଷ୍ଣ ତହିଁ । ଲୀଳାରଙ୍ଗ ଯେ ଲୀଳା ଭୂଇଁ ॥
ଯମୁନା କଦମ୍ବର କୂଳ । ଗୋପ ନବର ନନ୍ଦ ସ୍ଥଳ ॥
ଷୋଳ ସହସ୍ର ଗୋପ ପୋଏ । ନନ୍ଦର ସେବାରେ ସେ ଥାଏ ॥
ବଉଳା ନାମେ ଗାଈ ତହିଁ । ତେର ଖେଉଣୀ ସଙ୍ଗେ ରହି ॥
ସିଦ୍ଧ ଯେ ବନରେ ଚରନ୍ତି । ନନ୍ଦ ଗୋପାଳ ତହିଁ ସ୍ଥିତ ॥
ପଶ୍ଚିମ ଦଗର ବିସ୍ତାର । ଗୁପତ ବହୁତ ବିସ୍ତର ॥
ରାମକୃଷ୍ଣ ଯେ ଦୁଇ ଭାଇ । ଅବତାର ସ୍ୱେ ରୂପ ହୋଇ ॥
ପୃଥୂନା ନାମେ ଗାଈ ତହିଁ । ପନ୍ଦର ଖେଉଣୀ ସଙ୍ଗହିଁ ॥
ସୁଦାମ ପୂରୁବ ଭାଗର । ଦାମ ଯେ ପଶ୍ଚିମ ଦଗର ॥
ଦାମ ସୁବାହୁ ଉତ୍ତରେଣ । ଶ୍ରୀବତ୍ସ ଦକ୍ଷିଣ ଦଗେଣ ॥
ପଞ୍ଚ ଶାଖା ଯେ ରାମକୃଷ୍ଣ । ପଶ୍ଚିମ ଦଗେ ଲୀଳା ଶ୍ରେଷ୍ଠ ॥
ତିନି ସହସ୍ର ଗୋପସାର । ଅଛନ୍ତି ପଶ୍ଚିମ ଭାଗର ॥
ନୈଋତ କୋଣ କଥା ଶୁଣ । ଗୋପାଳ ତହିଁରେ ଯେ ପୁଣ ॥
ପଦ୍ମା ଯେ ନାମେ ଧେନୁ ତହିଁ । ସତର ଖେଉଣୀ ସେ ଗାଈ ॥
ସାତ ସହସ୍ର ଗୋପବାଳ । ଆନନ୍ଦ ନନ୍ଦ ତହିଁ ମେଳ ॥
କେଳି-ସୁନ୍ଦର ନାମେ ବନ । କୃଷ୍ଣର ଲୀଳା ରମ୍ୟ ସ୍ଥାନ ॥
ଦକ୍ଷିଣ ଦଗର ବିସ୍ତର । ଗୋପାଳ ଯେତେ ସଙ୍ଗେ ତାର ॥
ଲୀଳା ଯେ ନାମେ ଗାଈ ତହିଁ । ସାତ ଖେଉଣୀ ତହିଁ ରହି ॥
ମଳୟ ବନରେ ଚରନ୍ତି । ସାତଶ ଗୋପାଳ ଯେ ଯେତ ॥
ସାତ୍ତ୍ୱିକ ଗୋପାଳ ଯେ ମୋକ୍ଷ । କୃଷ୍ଣର ଲୀଳାରେ ଯେ ଦକ୍ଷ ॥
ଅଗ୍ନି କୋଣର କଥା ଯେତେ । କେ ମୁଖେ କହିବ ତା କେତେ ॥
ରମ୍ଭା ନାମେଣ ଗାଈ ସାର । ସତର ଖେଉଣୀ ସଙ୍ଗର ॥
ଷୋଳ ସହସ ସେ ସଙ୍ଗର । ସଉନନ୍ଦ ବରଜ ସାର ॥
ବାଳକମାନଙ୍କ ସଙ୍ଗର । ଭାଣ୍ଡିର ବନରେ ବିହାର ॥
ଏ ଅଷ୍ଟ ଦଗେ ହୋଇ ମେଳ । ଛୟାଶୀ ସହସ୍ର ଗୋପାଳ ॥
ଅଣସ୍ତରି ଖେଉଣୀ ଗାଈ । କୋଡ଼ିଏ ଶଙ୍ଖ ଛନ୍ତି ତହିଁ ॥
ସାତ ପଦ୍ମ ଯେ ଧେନୁ ସାର । ଅଛନ୍ତି ଏ ଅଷ୍ଟ ଦଗର ॥

ଆ ଅଷ୍ଟରେ ଚଉଷଠୀ । ବନରେ କରନ୍ତି ଗୋଷ୍ଠି ॥
ଚୌଷଠୀ ଗୋପାଳ ଯେ ସାର । ତହିଁରୁ ବାର ମୋକ୍ଷ ଆର ॥
ବାରରୁ ପାଞ୍ଚ ସାର ହୋଇ । ପାଞ୍ଚରୁ ବେନି ସାର କହି ॥
ଦାମ ସୁଦାମ ବେନି ଶାଖା । ରାମକୃଷ୍ଣ ଯେ ବେନି ଏକା ॥
ରାମ ଦକ୍ଷିଣେ ଦାମ ରହେ । କୃଷ୍ଣ ଦକ୍ଷିଣେ ସୁଦାମ ହେ ॥
ସୁବାହୁ କୃଷ୍ଣ ବାମେ ରହେ । ସୁବଳ ରାମ ବାମେ ଥାଏ ॥
ଗୋପ ମଣ୍ଡଳ ମଧ୍ୟେ ଶୋଭା । ଶ୍ରୀବତ୍ସ କରନ୍ତି ଯେ ସଭା ॥
ରାମ କୃଷ୍ଣ ଦାମ ସୁଦାମ । ସୁବାହୁ ସୁବଳ ଉତ୍ତମ ॥
ମଧ୍ୟରେ ଷଡ଼ ଶାଖା ରହି । ସମ୍ମୁଖେ ଶ୍ରୀବତ୍ସ ଅଛଇ ॥
ତାହାକୁ ବେଢ଼ି ଗୋପଗଣ । ମଣ୍ଡଳ କରଣ ଭିଆଣ ॥
କଂସାଳ ତାଳ ବେଣୁ ଶିଙ୍ଗା । ଶଙ୍ଖ ବଇଁଶୀ ଯେ ମୃଦଙ୍ଗା ॥
ଗାଈ ଚରାଇ ଗୀତ ଗାଇ । ଗୋପାଳ ମଣ୍ଡଳୀ ଭିଆଇ ॥
ଦ୍ୱାଦଶ ବନେ ଦିନେ ଦିନେ । ଲୀଳା କରନ୍ତି ଗୋପଗଣେ ॥
କ୍ଷୀର ଲବଣୀ ଖଣ୍ଡ ଗୁଡ଼ । ନଡ଼ିଆ ପୋଡ଼ ପିଠା ପାପଡ଼ ॥
ନବାତ ଛେନା ବସା ଦହି । ଆଗ୍ରର ଆମ୍ବୁଲ ମିଠାଇ ॥
ବନରେ ବନ ଭୋଜ କରେ । ନିତ୍ୟ ଗୋଲୋକରେ ବିହରେ ॥
ଗୋଲୋକ ଲୀଳା ଗୋପପୁର । ରଚିଲେ ଶ୍ରୀ ବୃନ୍ଦାବନର ॥
ଶ୍ରୀ ଗୋପ ଗୋପାଳ ସୁମର । ଏ ଭବ ଜଳୁଁ ହେବ ପାର ॥
ଖୋଳ କର୍ତ୍ତାଳ ଗୀତ ଗାଇ । ଶ୍ରୀ ଗୋପ ଗୋଲୋକକୁ ଧାଇ ॥
ଉଦ୍ଧାର ଗୋପକୁଳ କର । ଓଡ଼ରାଷ୍ଟ୍ରରେ ରଚ ଘର ॥
ମୁକୁନ୍ଦ ରାମ ଅନନ୍ତ ହେ । ଭୃଗୁ ପବନ ଧର୍ମୁ କହେ ॥
କୃଷ୍ଣ ଉତ୍ଥାନ ବଚ ଶୁଣ । ଯାଦବ ଦକ୍ଷିଣ ଚନ୍ଦ୍ରେଣ ॥

ନିରଞ୍ଜନ ବେଦେହେ ବସ୍ତ୍ର । ଗୁପତ କହିଲୁ ପ୍ରତ୍ୟକ୍ଷ ।।
ଅଚ୍ୟୁତଚରଣେ ସେତେ ଦାସ । ଏ ଗ୍ରନ୍ଥ ପଢ଼ି ପାପ ନାଶ ।।
ପଞ୍ଚ ଶାଖାଙ୍କୁ ସୁମରିବ । ପଞ୍ଚ ଅକ୍ଷରକୁ ଗୁଣିବ ।।
ଅକାଳମାନ କ୍ଷୟ ଯିବ । ଅଚ୍ୟୁତ ବଚନ ପାଳିବ ।।

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟ ଖଣ୍ଡେ ଗୋପାଳ
ଗାବ ଅଷ୍ଟାଦଶ ବର୍ଣ୍ଣନେ ନାମ ଚତୁର୍ବିଂଶ ପଟଳ ।

—:*:—

## ପଞ୍ଚବିଂଶ ପଟଳ

ମୁକୁନ୍ଦ ଗୋବିନ୍ଦ ବିଗ୍ରହୁ । ଗୋପାଳ ସେବା କ ରୂପରୁ ।।
କହିବା ତନ୍ତ୍ରର ବିଗ୍ରହ । ଅନନ୍ତ ହେତୁ ମନେ ଧର ।।
ପ୍ରଥମ ପ୍ରହରେ ଯେ ପୁଣ । ସ୍ତୋକ ଗୋପାଳ ସେବା ଜାଣ ।।
ଦ୍ୱିତୀୟ ପ୍ରହରେ ସେବା । ବୃଶାଳ ଗୋପାଳ ସେବିବା ।।
ତୃତୀୟ ପ୍ରହର ଯେ ହୋଏ । ବିଶାଳ ଗୋପାଳ ସେବାଏ ।।
ଜୟ ମାଧବ ଗୋପାଳ ସେ । ଚତୁର୍ଥ ପ୍ରହର ସେବା ସେ ।।
ପଞ୍ଚମ ପ୍ରହରେ ସେ ପୁଣ । ଅର୍ଜ୍ଜୁନ ଗୋପାଳ ସେବିଣ ।।
ଅଷ୍ଟମ ପ୍ରହରର ଅନ୍ତ । ସୁବଳ ଗୋପାଳ ଉଚିତ ?
ଷଷ୍ଠମ ପ୍ରହର ହୁଅନ୍ତେ । ସୁବଳ ଗୋପାଳ ସେବନ୍ତେ ।।
ସପତ ପ୍ରହରେଣ ପୁଣ । ବିନୋଦ ଗୋପାଳ ସେବିଣ ।।
ଅଷ୍ଟମ ପ୍ରହର ସମ୍ପୂର୍ଣ୍ଣ । ସ୍ତବନ୍ତ ଗୋପାଳ ସେବିଣ ।।
ଚମ୍ପକ ପୁଷ୍ପମାଳ ସେବା । ସ୍ତୋକ ହେ ଗୋପାଳ ସେବିବା ।।
ନାଗେଶ୍ୱର ଯେ ପୁଷ୍ପ ଦେଇ । ବୃଷଭ ଗୋପାଳ ସେବଇ ।।
ମାଧବୀ ପୁଷ୍ପ ଦେଇ ମାଳ । ସେବଇ ବିଶାଳ ଗୋପାଳ ।।
କଦମ୍ବ ପୁଷ୍ପମାଳ ଦେଇ । ଜୟମାଧବ ଯେ ସେବଇ ।।
ବଇଜୟନ୍ତ ପୁଷ୍ପ ସେବା । ଅର୍ଜ୍ଜୁନ ସାତ୍ତ୍ୱିକ ସେବିବା ।।

ଲବଙ୍ଗ ପୁଷ୍ପମାନ ଦେଇ । ସୁବଳ ଗୋପାଳ ସେବଇ ॥
କୁନ୍ଦ ପୁଷ୍ପ ଯେ ଗୁନ୍ଥି ମାଳ । ବିନୋଦ ନାମେଣ ଗୋପାଳ ॥
ବନମାଳ ଯେ ପୁଷ୍ପ ଧଣ୍ଡା । ସୁବର୍ଣ୍ଣ ଗୋପାଳ ଯେ ମଣ୍ଡା ॥
ମଣ୍ଡିଣ ପୁଷ୍ପ ସେବାକରେ । ଯୁଥ ଗୋପାଳ ଏ ସଙ୍ଗରେ ॥
ରାହାସେ ପୁଷ୍ପ ସେବା କରି । ଭ୍ରମର ପଙ୍କାମାନ ଧରି ॥
ଏ ଅଷ୍ଟ ପ୍ରହର ଜଗିଣ । ପୁଷ୍ପ ଯେ କରନ୍ତି ଭୂଷଣ ॥
ଏହି ଭାବରେ ମନ ଦେଇ । ସଖା ଭକତ ଭାବ ହୋଇ ॥
ରାହାସେ ପୁଣ୍ୟ ଅଣାଇବ । ସଖୀ ଭାବରେ କୃଷ୍ଣେ ଦେବ ॥
ମୌଷ୍ଟ୍ରବ କୀର୍ତ୍ତନ ବେଳେଣ । ପୁଷ୍ପ ସେବା ଯେ ଏ ରୂପେଣ ॥
ଏ ଭେଦ ନ ଜାଣିଲେ ପୁଣ । ପୁଷ୍ପ ଦିଅନ୍ତି ରାହାସେଣ ॥
ପୁଷ୍ପ ଭକତ ନ ଜାଣନ୍ତି । ଯେସନେ ବନ୍ଧ୍ୟା ଯେ ଯୁବତୀ ॥
ମୁକୁନ୍ଦ ଅନନ୍ତ ଯାଦବ । ଏ କଥା ଦୃଢ଼ କରି ଭାବ ॥
ରାହାସ ଦାସ ବାରଷିଆ । ଗୋପାଳ କୁଳ ମୋକ୍ଷ ହୁଆ ॥
ଧନ ପଣକୁ ଏଡ଼ି ଦେଲେ । ସ୍ତିରୀ ପୁତ୍ରକୁ ମୁରୁଛିଲେ ॥
ବାର ବରଷ ଦିଗମ୍ବର । ଅଙ୍ଗର ପାପ କଲି ଦୂର ॥
ଶ୍ରୀଗୁରୁ ପରମ ଯେ ଗୁରୁ । ପଞ୍ଚରି ଶୁଣିଲି ମୁଖରୁ ॥
ବାର ବରଷ ଘରେ ଥିଲି । ବାର ବରଷ ତୀର୍ଥ କଲି ॥
ବାର ବରଷ ଗୁରୁ ସେବା । ଭୂମୁକ୍ତି କି ଉପମା ଦେବା ॥
ପାଇଲି ଶ୍ରୀକୃଷ୍ଣ ଭଣ୍ଡାର । ନିର୍ଗୁଣ ସଗୁଣ ବିଗ୍ରହ ॥
ହରି ବଣିକେ କଲି ଆଶ । ମାୟା ବଣିକ କଲି ନାଶ ॥
ହରେ ରାମକୃଷ୍ଣ ଯେ ଷଡ଼ । ରସ ମନ୍ତ୍ରର କଲି ଦୃଢ଼ ॥
ନିର୍ଗୁଣ ମନ୍ତ୍ର ଗୁପତେଣ । ଅଣଅକ୍ଷର ଯେ ଗୁଣିଣ ॥
ପ୍ରାଣୀକି ଶୁଣାଇ ଶୁଣିଲି । ଚୌଦିଶା ଚୌପଦୀ ରଚିଲି ॥
ଶାଖୀ ସୁମୂର୍ତ୍ତି ଯେ କାହ୍ନାଣୀ । ଛିଗ ଛମାଳୀ ରାଗ ପୁଣି ॥
ବଣିଆ ପଟୋଳିର ମତ । ହରି ଚରଣେ ଦେଇ ଚିତ୍ତ ॥
କଳି ଭଜନ ସନ୍ତୋଷେଣ । ହରି ପସରା କରି ପଣ ॥

ଗୁରୁଙ୍କ ମହିମା ରଚିଲି । ମାତା ପିତାଙ୍କୁ କହିଲି ॥
ଗୁରୁଙ୍କ ଧର୍ମ୍ମ ଯେ ରଖଇ । ସୁପୁତ୍ର ତାହାଙ୍କୁ ଯେ କହି ॥
ମାତା ପିତାର ଧର୍ମ୍ମ ରଖି । ସୁପୁତ୍ର ବୋଲି ତାକୁ ଲେଖି ॥
ଏ ଧର୍ମ୍ମ ଯେ ପୁତ୍ର ନ କରେ । ଚୌରାଶୀ ଯୋନି ଦେହ ଧରେ ॥
କଳିରେ କୁପୁତ୍ର ବହୁତ । ଗୁରୁ ନ ସେବି ଦୁଷ୍ଟ ଚିତ୍ତ ॥
କଳିରେ ମହା ପାପୀ ଯୋଏ । ମାତା ପିତାଙ୍କୁ ଏଡ଼ି ରହେ ॥
ବର୍ଣ୍ଣ ଶଙ୍କର ପୁତ୍ର ଏହି । ଏ ପୁତ୍ରେ ପ୍ରୟୋଜନ ନାହିଁ ॥
ତୁମ୍ଭେ ଚଉଶ ପୁତ୍ରେ ମୋର । ସୁପୁତ୍ର ସୁବୁଦ୍ଧି ସୁନର ॥
ଭକତ ହେଉ ତୁମ୍ଭ ଦେହ । ଅଚ୍ୟୁତ ଅଂଶେ ମିଶି ରହ ॥
ଦୀନ ଅଚ୍ୟୁତ କଥା ସାର । ଚଉଶ ଯୋଏ ମନେ ଧର ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟ ଖଣ୍ଡେ ଅଷ୍ଟ ପ୍ରହର
ପୁଷ୍ପସେବା କଥନେ ପ୍ରହାସ ଲୀଳା ବର୍ଣ୍ଣନ
ନାମ ପଞ୍ଚବିଂଶ ପଟଳ ।

—:0:—

## ଷଡ଼୍‌ବିଂଶ ପଟଳ

ଅନନ୍ତ ମୁକୁନ୍ଦ ଗୋପାଳ । କହିବା ବନର ଯେ ସ୍ଥଳ ॥
ବନମାନଙ୍କ କଥା ରସ । ଫେଡ଼ିଲେ ଫିଟିବ ସନ୍ଦେଶ ॥
କହିବା ହେତୁ ମନେ ଧର । ଦ୍ୱାଦଶ ବନର ବିସ୍ତର ॥
ତାଳ ବନ ଯେ ଏକ ହୋଇ । କାଦମ୍ବରୀ ଯେ ବନ ଦୁଇ ॥
ବକୁଳ ବନ କୁଞ୍ଜ ବନ । କଣ୍ଠ ବନ ବୃନ୍ଦାବନ ॥
ରହସ୍ୟ ବନ ହେମ ବନ । ବସନ୍ତ ବନ ସଉବନ ॥
ସଦା ଆନନ୍ଦ ବନ କହି । କିଶୋର କିଶୋରୀ ବନହିଁ ॥
ଦ୍ୱାଦଶ ବନ ଏ ରୂପରେ । ବିହାର ଶ୍ରୀ ବୃନ୍ଦାବନରେ ॥

ଯାଦବ ନୀଳବନେ ରହି । ଦ୍ୱାଦଶ ସହ୍ର ଗୋପ ତହିଁ ॥
କଦମ୍ବ ବନେ ସଙ୍କର୍ଷଣ । ଦ୍ୱାଦଶ ସହ୍ର ଗୋପଗଣ ॥
ଦାମ ଯେ ବକୁଳ ବନରେ । ଦ୍ୱାଦଶ ସଖା ବୃନ୍ଦ ତାରେ ॥
ସୁଦାମ କୁଞ୍ଜବନେ ରହି । ବାର ସହ୍ର ଗୋପାଳ ତହିଁ ॥
ତ୍ରିଶ ସହସ୍ର ଯୋଗାରୂଢ଼ । ଅନନ୍ତ ହରିମନ୍ତ୍ର ଦୃଢ଼ ॥
ଶ୍ରୀବତ୍ସ ବୃନ୍ଦାବନେ ରହେ । ଦ୍ୱାଦଶ ସହ୍ର ଗୋପ ପୋଏ ॥
ବସନ୍ତ ବନେ ସଉନନ୍ଦ । ଦ୍ୱାଦଶ ସହ୍ର ଗୋପ ବୃନ୍ଦ । ୧୫ ।
ଶ୍ରୀକୃଷ୍ଣ ମନ୍ତ୍ର ଜପ କରି । ସେ ବନେ ସୁଖେଣ ବିହରି ॥
ଗୋବିନ୍ଦାସ୍ତ ଯେ ମନ୍ତ୍ର ଗୁଣି । ବସ୍ତ୍ରା ଚରାନ୍ତ ବନେ ପୁଣି ॥
ଯାଦବ ସଖା ମନ୍ତ୍ର ଏହି । ଭାଗବତ ମୁଖରେ ଗାଇ ॥
କଦମ୍ବ ବନେ ସଙ୍କର୍ଷଣ । କୃଷ୍ଣାସ୍ତ ମନ୍ତ୍ର ସେ ଭଜନ ॥
ବକୁଳ ବନେ ଦାମ ରହି । ହରେ ଯେ ମନ୍ତ୍ର ଜପୁ ତହିଁ । ୨୦ ।
କୁଞ୍ଜବନେ ସୁଦାମା ରହି । ଅନନ୍ତ ହରି ମନ୍ତ୍ର ଧ୍ୟାୟି ॥
ଅନନ୍ତ ଶବଦ ଯେ ରାମ । ହରି ଶବଦ କୃଷ୍ଣ ଶ୍ୟାମ ॥
ଏଣୁ ଏ ରାମ କୃଷ୍ଣ ନାମ । କ୍ଷଣେ ନ ଛାଡ଼ନ୍ତ ସୁଦାମ ॥
ଗାଈ ଚରାଉଥାନ୍ତ ବନେ । ହଂସ ଶବଦ ଧରେ ମନେ ॥
ରାଆ ଶବଦ ଏଡ଼ାଳରେ । ମଥ ରହଇ ଗୁପତରେ ॥
ରାମକୃଷ୍ଣ ଯେ ସଖାଗଣ । ଜପନ୍ତ ରାମକୃଷ୍ଣ ପୁଣ ॥
ରାଆରେ ରାମ ଯେ ଗୁପତ । ଆବରି ଡକାନ୍ତ ବସ୍ତ୍ରନ୍ତ ॥
ଶ୍ରୀରାମ ବୃନ୍ଦାବନ ଲୀଳା । ବାର ସହସ୍ର ଗୋପ ଖେଳା ॥
ଗୋପୀଜନ ବଲ୍ଲଭାସ୍ତ ଗୁଣି । ବୃନ୍ଦାବନରେ ରହେ ପୁଣି ॥
ବସନ୍ତ ବନେ ସଉନନ୍ଦ । ମନ୍ତ୍ର ସେ ଜପଇ ଗୋବିନ୍ଦ ॥

---

୧୫—ଖ—

ଉଦ୍ଧବ କଣ୍ଟ୍ୟ ବନରେ । ଜପ କରନ୍ତ ନିରନ୍ତରେ ॥
ରହସ୍ୟ ବନରେ ଅକ୍ରୂର । କୃଷ୍ଣ ହରେ ଜପି ମନ୍ତ୍ରର ॥
ସାତ୍ୟକି ହେମ ବନେ ରହି । ହରେ ଯେ ନାମ ଜପେ ତହିଁ ॥

ବୃନ୍ଦାବନ ଯେ ଉପବନେ । ହରେ ଯେ ମନ୍ତ୍ର ଗୁଣି ମନେ ॥
କଣୋଗ୍ରୀ ବନେ ରାଧାକୃଷ୍ଣ । ରାଧା ମନ୍ତ୍ର ଜପି ଅଗ୍ରୀଷ୍ଟ ॥
ଉଦ୍ଧବ କଣସ୍ଥ ବନରେ । ଦ୍ୱାଦଶ ସଖ ସଙ୍ଗତରେ ॥
ରହସ୍ୟ ବନରେ ଅକ୍ରୂର । ଦ୍ୱାଦଶ ସହସ୍ର ସଙ୍ଗର ॥
ସାତ୍ତ୍ୱିକ ହେମ ବନେ ରହେ । ଦ୍ୱାଦଶ ସସ୍ର ଗୋପ ପୋଏ ॥
ରାଧିକା କୃଷ୍ଣ ନାମ ଜପେ । ଅପେ ଆପଣା ନାମ ସ୍ଥାପେ ॥
କାଳଁ ବୀଜ ଯେ ରାଧା ଧରେ । ଶ୍ରୀରଁ ବୀଜ ଯେ ରାଧା ସ୍ମରେ ।
ଗୋପୀ ଗୋବିନ୍ଦ ଯେ ଧରଇ । କେ ଜନ ବଲ୍ଲଭାୟ କହି ॥
କ୍ଲୀଁ କୃଷ୍ଣାୟ କେବା ଧରେ । କେ ହରେକୃଷ୍ଣ ନାମ ସ୍ମରେ ॥
ରାଧା ମନ୍ତ୍ର ବା କୃଷ୍ଣ ମନ୍ତ୍ର । ଆବର ଗୋପାଳର ମନ୍ତ୍ର । ୪୦ ।
ହରେ କୃଷ୍ଣ ଯେ ମନ୍ତ୍ର ଧରି । ଗୋପାଳ ବନରେ ବିହରି ॥
ଦ୍ୱାଦଶ ବନର ବିଗ୍ରହ । ବାରଟିଆ ଯେ ମନେ ଧର ॥
ଦ୍ୱାଦଶ ବନ ଧ୍ୟାନ କରି । ଦ୍ୱାଦଶ ଗୋପାଳ ସୁମରି ॥
ରାହାସ ରସରେ ମିଶିବ । ସାଖା ସଖୀ ଯେ ହାବ ଭାବ ॥
ସ୍ୱରୂପ ଅଙ୍ଗ ପାଲଟଇ । ସ୍ତ୍ରିଙ୍ଗ ଅଙ୍ଗରେ ସେବା ଧ୍ୟାଇ ॥
ରାଧିକା ମନ୍ତ୍ର ଜପ କରି । ଶ୍ରୀ ବୃନ୍ଦାବନକୁ ସୁମରି ॥
ତେବେ ରାହାସ ରସେ ମିଶେ । ଅଚ୍ୟୁତ କହିଲେ ହରଷେ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ଚୂଡ଼ାମଣି ଖଣ୍ଡେ ସଖାଗଣ ବନର
ନିଯ୍ୟମ ଉଚ୍ଚାରଣ ନାମ ଷଡ଼୍‌ବିଂଶ ପଟଳ ।

—:o:—

## ସପ୍ତବିଂଶ ପଟଳ

ଅନନ୍ତ ମୁକୁନ୍ଦ ଗୋବିନ୍ଦ । ଗୁରୁ ଗୋବିନ୍ଦ ଫେଡ଼ ଧନ୍ଦ ॥
କଦମ୍ବ ବନ ଧ୍ୟାନ କରି । ଏମନ୍ତ ହୃଦରେ ସୁମରି ॥
କ୍ଲୀଁ କୃଷ୍ଣାୟ ଯେ ନମଃ । ଏ ମନ୍ତ୍ର ଗୁଣିବ ଉତ୍ତମ ॥
ନୀଳ ବନକୁ ଧ୍ୟାନ କରି । ଏମନ୍ତ ମନ୍ତ୍ରକୁ ସୁମରି ॥

କ୍ଳୀଁ କୃଷ୍ଣାୟ ରାମ ହରେ । ସୁଦାମ ସ୍ମରେ ସେ ଅନ୍ତରେ ।
ବକୁଳ ବନ ଲକ୍ଷ୍ୟ କଲେ । ଏ ମନ୍ତ୍ର ଜପିବ ସେ ଭଲେ ॥
ହ୍ରୀଁ କୃଷ୍ଣାୟ ସେ ନମଃ । ଏ ମନ୍ତ୍ର ଜପିବ ଉତ୍ତମ ॥
କୁଞ୍ଜ ବନକୁ ସୁମରିଲେ । ଏ ମନ୍ତ୍ର ଜପିବ ସେ ଭଲେ ॥
ଓଁ କୃଷ୍ଣ ପରମାନନ୍ଦ । ନମାମ୍ୟହଂ ସେ ଆନନ୍ଦ ॥
ବୃନ୍ଦାବନକୁ ଧ୍ୟାନ କରି । ମନ୍ତ୍ର ସୁମରି ହୃଦେ ଧରି ।
ଓଁ କ୍ଳୀଁ ମାଧବାୟ । ଉଦ୍ଧବ କୃଷ୍ଣ ନମାମ୍ୟହମ୍ ॥
କଣ୍ଠସ୍ଥ ବନ ସୁମରିବ । ଯତନେ ଏ ମନ୍ତ୍ର ଭଜିବ ॥
କ୍ଳୀଁ କୃଷ୍ଣ ସେ ଗୋବିନ୍ଦ । ରାମ ହରେ ସେ ହୃଦେ ବନ୍ଧ ॥
ରହସ୍ୟ ବନ ଧ୍ୟାନ କର । ଏ ମନ୍ତ୍ର ହୃଦରେ ସୁମର ॥
ହଉଁ ସେ ହେଜ କଲ୍ପତରୁ । ସାତ୍ୱିକ ନମ ତତେ କରୁ ।
ହେମ ବନକୁ କର ଧ୍ୟାନ । ଏ ମନ୍ତ୍ର ଜପିବ ଯତନ ॥
ଓଁ ସେ କ୍ଳୀଁ ସେ କୃଷ୍ଣ । ମାଧବ ହରି ଏତୁ ଶ୍ରେଷ୍ଠ ॥
ବସନ୍ତ ବନର ବସ୍ତୁର । ଧ୍ୟାନ ପଥରେ ଲକ୍ଷ୍ୟ କର ॥
ଓଁ କ୍ଳୀଁ ରାମ ରାମ । ମାଧବ ତୋରେ ନମୋ ନମ ॥
ସନ୍ତ ବନକୁ ସୁମରଣ । ଜପ ଏମନ୍ତେ ହୃଦେ ଘେନ ।
କ୍ଳୀଁ କୃଷ୍ଣ ହେ ଗୋବିନ୍ଦ । ଏ ମନ୍ତ୍ର ଜପିଣ ଆନନ୍ଦ ॥
ସଦା ଆନନ୍ଦ ମନେ ଧ୍ୟାନ । ଏ ମନ୍ତ୍ର ଜପିବ ଯତନ ॥
ଓଁ କ୍ଳୀଁ ହେ ଗୋବିନ୍ଦ । ହରେ ହରେ ପରମାନନ୍ଦ ॥
କିଶୋର ବନର ଭଜନ । ହୃଦରେ ଗୁଣିବ ମନେଣ ॥
ଓଁ କୃଷ୍ଣ ସେ ରାଧେ କୃଷ୍ଣ । ରାଧା ଶ୍ୟାମ ସେ କୃଷ୍ଣ କୃଷ୍ଣ ॥
କଦମ୍ବ ବନେ ଦାମ ରହେ । ସୁଦାମ ନୀଳବନେ ଥାଏ ॥
ଶ୍ରୀବତ୍ସ ବକୁଳ ବନରେ । ସ୍ତୋକ କୃଷ୍ଣ କୁଞ୍ଜବନରେ ॥
ଉଦ୍ଧବ ଶ୍ରୀ ବୃନ୍ଦାବନରେ । ପାଦୁକା ରହସ୍ୟ ବନରେ ।
ବସନ୍ତ ବନେ ବୃନ୍ଦା ନନ୍ଦ । ଯୌବନେ ଆନନ୍ଦ ସେ ନନ୍ଦ ॥
ସୁବାହୁ ସଦା ଆନନ୍ଦରେ । ସଦା ଆନନ୍ଦ ସେ ବନରେ ॥

କଶୋଖି ବନେ ରାଧା କୃଷ୍ଣ । ଏମନ୍ତ ବନରେ ଯେ ଭେଟ ॥
ଶ୍ରୀ ବୃନ୍ଦାବନ ଧ୍ୟାନ କରି । ଶାଖା ଭଗତ ହୃଦେ ଧରି ॥
କଦମ୍ବ ବନେ କର ଆଶ । ନନ୍ଦ ଆନନ୍ଦ ଧ୍ୟାନେ ଘୋଷ ॥
ଅନନ୍ତ ମୁକୁନ୍ଦ ଯେ ଦୁଇ । ନୀଳ ବନକୁ ଧ୍ୟାନ ରହି ॥
ବକୁଳ ବନକୁ ସୁମର । ଯାଦବ ବସ୍ତ୍ର ମନେ ଧର । ୩୭ ।
କୁଞ୍ଜ ବନକୁ ସୁମରିବ । ରାମ ପବନ ଯେ ଧରିବ ॥
ଶ୍ରୀବୃନ୍ଦାବନ ଲକ୍ଷ୍ୟେ କର । ଗୋବିନ୍ଦ ଭରଥ ସୁମର ॥
କଣ୍ଡୁ ବନ ଲକ୍ଷ୍ୟେ କରି । ଧର୍ମ୍ମ ମଥୁରା ମନେ ଧରି ॥
ରହସ୍ୟ ବନରେ ଭଜନ । ବିଷ୍ଣୁ ଉତ୍ଥାନ ଦିଅ ମନ ॥
ସଙ୍ଘ ବନରେ କର ସେବା । ଦକ୍ଷିଣ ବାଳକ ସର୍ବଦା ॥
ବସନ୍ତ ବନ କର ଲକ୍ଷ୍ୟେ । ନିରଞ୍ଜନ ଯେ ବୃନ୍ଦା ଧ୍ୟାୟେ ॥
ସଙ୍ଘ ବନରେ କର ସେବା । ଗୋବିନ୍ଦ ବନ୍ଧ ଯେ ଧ୍ୟାଇବା ॥
ସଦା ଆନନ୍ଦ ବନେ ବାସ । ମଧୁ ଲେହ୍ୟ ଯେ କର ଆଶ ॥
କଶୋଖି ବନେ ସର୍ବେ ସେବା । ଚବିଶ ଗୋପାଳ ମିଳିବା ॥
ରାଧା କୃଷ୍ଣ ଯେ ନିତ୍ୟ ଜାଣି । ରସ ରସ କଥା ଅଗ୍ରଣୀ । ୪୫ ।
ରାଜ ଦିକସେ ସେବା ମାନ । ଧ୍ୟାଇଣ କରିବେ ଭଜନ ॥
ସତ୍ୟରେ ଋଷିଗଣ ହେଲ । ଭଗବାନରେ ବିହରିଲ ॥
ତ୍ରେତାରେ ବାନର ହୋଇଣ । ଭ୍ରମିଲ ଶ୍ରୀରାମ ସଙ୍ଗେଣ ॥
ଦ୍ୱାପରେ ଶ୍ରୀକୃଷ୍ଣ ସଙ୍ଗରେ । ବିହାର ଶ୍ରୀବୃନ୍ଦାବନରେ ॥
କଳିରେ ନଦିଆ ନବରେ । ଜନମ ହେଲ ଗଙ୍ଗା ତୀରେ ॥
ଉତ୍କଳେ ବିରଜା ଦେଶରେ । ଜନମ ଝଙ୍କର ବିପରେ ॥
ପୁଣ ବିନ୍ଦୁର ଅର୍କ ସ୍ଥଳ । କଳଙ୍କି ସଙ୍ଗେ ହୋଇ ମେଳ ॥
ଘୃଣ ଯେ ଲକ୍ଷ ଭୋଗ ହେବ । ମୃତ୍ୟୁ ଯେ ପୁଣ ନ ଲଭିବ ॥
ବଢଣ ସସ ପାପେ ଯିବ । ବଉଦ୍ଧ ରୂପ ଗୋପ୍ୟ ହେବ ॥
କଳଙ୍କି ହୋଇବେ ଆପଣ । ଥିବେ ସଙ୍ଗତେ ବାରଜଣ ॥
ଆବର ବାରଜଣେ ପୁଣି । ଲୀଳା କରିବେ ସଙ୍ଗେ ଦେଖି ॥
ସତ୍ୟ କଳି ଯେ ପ୍ରକାଶିବ । ପୃଥିବୀ ଭକ୍ତ ବୃନ୍ଦ ହେବ ॥

ସୁବର୍ଣ୍ଣ ଗୃହରେ ରହିବ । ଛଣଛୁଆ ଘର ନୋହିବ ॥
କର ନ ନେବ ରାଜା ପୁଣ । ଉଦର ମାଫିକେ ଚଷିଣ ॥
ଶୂଦ୍ରଙ୍କ କର୍ମ ସର୍ବ ଯିବ । ଯେ ଯାହା ବୃତ୍ତି ସେ କରିବ ॥
ବହୁତ ଦୁଧ ଗାଈ ଦେବେ । ଗୋପାଳେ ଦୁଃଖରୁ ବର୍ତ୍ତିବେ ॥
ଯେତେ ଧେନୁ କଳିରେ ଗୁପତ । ଗୋପାଳେ ନୋହିବେ ଉଦ୍ଧତ ॥
ଗଉଡ଼ ଜାତି ବୋଲାଇବେ । କଳିରେ କଷ୍ଟରେ ବର୍ତ୍ତିବେ ॥
କଳଙ୍କି ଗୋପାଳଙ୍କୁ ଧେନୁ । ଭୁଞ୍ଜିବୁ ଘୃତଦୁଧ ପୁଣି ॥
ଗୋପାଳ ପ୍ରାୟେ ଗୋପାଳରେ । ବିହାର କରିବେ ଓଡ଼ରେ ॥
ଛେନା ଲବଣୀ ଦୁଧସର । ଅଧାମ ଗୋଷ୍ଟିକା ସାକର ॥
ଗୋପାଳ ସଙ୍ଗରେ ଭୁଞ୍ଜିବୁ । କାଳିଆ ଘୋଡ଼ାରେ ଚଢ଼ିବୁ ॥
ଅନନ୍ତ କେଶରୀ ରାଜନ । ଧଳା ଘୋଡ଼ା ସେ କରି ଯାନ ॥
ଚାରି ବର୍ଣ୍ଣର ଲୋକ ଯେତେ । ଅଠର ପାଟକ ସହିତେ ॥
ସମସ୍ତେ ଏକଠାରେ ମିଳି । ସଂସାରେ ନ ଥିବ ଯେ କଳି ॥
ଋଷି ପୁରୁଷମାନେ ପୁଣ । କରିବେ ସମାଧି ଧାରଣ । ୭୦ ।
ସଗୁଣ ରୂପ ସଙ୍ଗେ ଥିବେ । ନିର୍ଗୁଣ ରୂପକୁ ଧ୍ୟାଇବେ ॥
କଟକ ବସିବ ଯେ ପୁଣ । ଅର୍କ ବଟର ସନ୍ନିଧେଣ ॥
ହରିଶିପୁର କୁଜଙ୍ଗରେ । ରଇଁତୋ ଯାଜ ଏ ନଗରେ ॥
ଏତେ ଲମ୍ବରେ ଯେ କଟକ । ଭଲ ଦଉଡ଼ ଅଶ୍ୱ ଏକ ॥
ଯାଜ ନଗରୁ ଛଡଅନା । କଟକ ଠାରୁ ହଟକନା ॥
ଏଥିରେ ବର୍ଷିବ ନବର । ଦାଣ୍ଡ ରହିବ ନଅଁଳାର ॥
ପାରଦ୍ୱୀପରୁ ବାଙ୍କି ଯାଏ । ଚାଲିବା ଦାଣ୍ଡ ସେ ଗୋଟାଏ ॥
କନ୍ଦର୍ ପାରି ଏକ ଖଣ୍ଡ । ଘୋଡ଼ାଙ୍କୁ ଉତ୍ତମ ଏ ଦାଣ୍ଡ ॥
ସକଳ ଥାନ ଭାଙ୍ଗିଯିବ । ଏ ଥାନେ କଟକ ବସିବ ॥
କଳି ଚରିତ କଥାମାନ । ଆଗକୁ ଗଣିବେ ସୁଜନ । ୮୦ ।
କଳିରେ ଯେତେ ଜନ ଥିଲେ । ଅଜ୍ଞାନେ ଦାନ ସେ ବର୍ତ୍ତିଲେ ॥
ସକଳ ଶାସ୍ତ୍ର ବୁଝିଥିଲେ । ଅମେଧ ଦ୍ରବ୍ୟହିଁ ଭକ୍ଷିଲେ ॥

ମସ୍ତ୍ୟ ମାଉଁସ ପର ଦାରା । ପ୍ରାଣୀଏ ଏ ହେତୁରୁ ମାରା ॥
ଏଣୁ ଅଲପ ଧନେ ନାଶ । ନିର୍ଗୁଣ ନ ସାଧିଲେ ଲେଶ ॥
ନିର୍ଗୁଣ ଯେ ଜନ ସାଧଇ । ଅଲପ ଧନେ ନ ମରଇ ॥
ଘୋର କଳିରେ ପ୍ରାଣୀ ମତ୍ତ । ଏଣୁ ଅଲପ ଧନେ ହତ ॥
ଏଣୁ ନିର୍ଗୁଣ ଲକ୍ଷ୍ୟେ କର । ଅଚ୍ୟୁତ ବାକ୍ୟ ନିରାଧାର ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟ ଖଣ୍ଡେ ବନ ଦର୍ଶନ
ମନ୍ତ୍ରଭେଦ କଥନେ କଳି ଆଗମ ଚରିତେ
ନାମ ସପ୍ତବିଂଶ ପଟଳ ।

—:o:—

## ଅଷ୍ଟାବିଂଶ ପଟଳ

ମୁକୁନ୍ଦ ଅନନ୍ତ ସୁମର । ବାର ଗୋପାଳ ସଙ୍ଗକର ॥
ଶ୍ରୀ ବୃନ୍ଦାବନକୁ ଧାଇବ । କୀର୍ତ୍ତନେ ମନ ଦେଇଥିବ ॥
ରହାସେ ସେବ ଯେ ତୁମ୍ଭଙ୍କୁ । ସପ୍ତ ପୁରୁଷ ଉଦ୍ଧାରକୁ ॥
ଯେତ୍ତୁ ସେ ରହାସ ସେବିବ । ସେ ବୃନ୍ଦାବନକୁ ପାଇବ ॥
ରାମ ଭରଥ ତୁମ୍ଭେ ବୁଝ । ବାର ଗୋପାଳ ଏଥି ମଜ୍ଜ ॥
କିରୂପେ ତୁମ୍ଭଙ୍କୁ ଧାଇବେ । ଏ ଭେଦ ଆଜ୍ଞା ହେଉ ଏବେ ॥
ମୁଁ ତୁମ୍ଭ ଭୃତ୍ୟଙ୍କର ଭୃତ୍ୟ । ତୁମ୍ଭ ସେବାରେ ନିମଜ୍ଜିତ ॥
ମୁଁ କାହିଁ ତୁମ୍ଭଙ୍କୁ ପାଇବ । ଭୃତ୍ୟ ପଣରେ ଧନ ନେବ ॥
ମୁକୁନ୍ଦ ଅନନ୍ତ ହେ କାଣ । ତାରିଲ ସକଳ ଯେ ଜନ ॥
ଗୋପାଳ କୁଳ ଉଦ୍ଧାରଣ । ଧନ୍ୟ ସେ ତୁମ୍ଭ ପ୍ରୀତି ପୁଣ॥
ଟଙ୍କା କଉଡ଼ି ଘେନ ବୁଲ । ଯାହା ମାଗିଲ ତାହା ଦେଲ ॥
ଛତିଶ ପାଟକରୁ ଆଣି । ଦେଲ ଯେ ଆମ୍ଭଙ୍କୁ ସେ ପୁଣି ॥
ସଂସାରେ ଭିକ୍ଷା ଯେ ମାଗିଲ । ଆମ୍ଭଙ୍କୁ କିରୂପେ ସେ ଦେଲ ॥
ଆମ୍ଭେ ତୁମ୍ଭର କି କରିବୁ । କିରୂପେ ସେବାରେ ଥାପିବୁ ॥

ତୁମ୍ଭେ ଆମ୍ଭର ଗୁରୁ ଅଟ । ଭିକ୍ଷା ମାଗିଣ ପାଦେ ଖଟ ॥
ତୁମ୍ଭ ଅଂଶରେ ଯେତେ ଥିବେ । ଜନ୍ମେ ଜନ୍ମେ କୃଷ୍ଣ ସେବିବେ ॥
ତୁମ୍ଭ ଅଂଶରେ ଅଂଶ ପୁଣ । ନାମ ଗାୟନେ ଯାଉ ଦିନ ॥
ମୃଦଂଗ ତାଳ ଯେ ଧେନବେ । ଶ୍ରୀ ବୃନ୍ଦାବନକୁ ଗମିବେ ॥
ଦ୍ୱାଦଶ ଗୋପାଳ ନ ସ୍ମରେ । କାମଳ କୃଷ୍ଣ ତା ଶରୀରେ ॥
ମଗ୍ନ ମୁକୁନ୍ଦ ଅନନ୍ତକୁ । ଅଚ୍ୟୁତ କୃପା ଯେ ତାହାକୁ ।

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟ ଖଣ୍ଡେ ରହାସ
ନିର୍ଣ୍ଣୟ ବର୍ଣ୍ଣନେ ଭେଦ କଥନେ
ନାମ ଅଷ୍ଟାବିଂଶ ପଟଳ ।

---

## ଊନତ୍ରିଂଶ ପଟଳ

ମୁକୁନ୍ଦ ଅନନ୍ତ ସୁଦାମ । ଆଜ୍ଞା ଯେ ଦିଅ ଗୁରୁବ୍ରହ୍ମ ॥
ନାମ କୃଷ୍ଣ ଯେ କରୁପେଣ । କରିବୁଁ ଆମ୍ଭେ ସୁମରଣ ॥
ଗୁରୁ ବଚନ ଶିଷ୍ୟେ ଶୁଣ । କହିବା ଏଥି ରୂପ ଗୁଣ ॥
ଅର୍ଦ୍ଧମାତ୍ରାର ତଳେ ବସେ । ଅକାର ମୂର୍ତ୍ତି ଯେ ପ୍ରକାଶେ ॥
ଆଦି ଅକାର କୃଷ୍ଣ ବର୍ଣ୍ଣ । ନଅ ଦିକଳା ପାଦେ ଚିହ୍ନ ॥
ଉପର ଶିର ହସ୍ତ ହୋଇ । ନୟନ ନାସା ମୁଖ ସେହି ॥
ପ୍ରାନ୍ତର ନଅ ପାଦ ଶୋଭା । ଉପର ନଅ ହୃଦେ ଆଭା ॥
ଭୁଜ ଯେ ଅଟେ ଶୁଭ୍ର ସେହି । ଭୁଜ ନୟନ ନାସା ଏହି ॥
ନମ ରାଧା ଯେ ଛନ୍ଦ ତହିଁ । ଶୁଣିଲୁ-ଟିକ ହୋ ତନସ୍ଥି ॥
ଅକାର ପ୍ରାନ୍ତ ବିଷ୍ଣୁ ଜାଣ । ଉକାର ବ୍ରହ୍ମ ପରମାଣ । ୧୦ ।
ମକାର ମହେଶଟି ବନ୍ଧ । ଏମନ୍ତେ ତିନ ରୂପ ତହିଁ ॥
ମକାର ଅଟଇ ଅନନ୍ତ । ସିଂହାସନ ଅଟଇ ସେ ତ ॥
ମକାର ଅଟେ ସୁଦର୍ଶନ । ଏମନ୍ତେ ତିନ ରୂପ ଚିହ୍ନ ॥

ଅକାର ପ୍ରାନ୍ତ ଜଗନ୍ନାଥ । ଉକାରେ ସୁଭଦ୍ରା ସଂଯୁକ୍ତ ॥
ଏ ଗର୍ଭେ ନଅ ନଜରୂପ । ଅଛନ୍ତି ଗୁପତେ ସେହି ତ ॥
ଏ ରାଧାକୃଷ୍ଣ ଯେ ଉତ୍ତମ । ନାମ ଯେ ଶ୍ରୀ ପୁରୁଷୋତ୍ତମ ॥
ଏକାରେ କୃଷ୍ଣ ବେଜାକ୍ଷର । ମକାରେ ହରେ ବେଜ ଧର ॥
ଉକାରେ ରାମ ବେଜ ବସେ । ଅଧରେ ଶ୍ୟାମ ପରକାଶେ ॥
ଏମନ୍ତେ ହରେ ରାମକୃଷ୍ଣ । ଶ୍ୟାମ ମିଶିଣ ଗୃହ ଧାମ ॥
ହରେ ଯେ ବଳଭଦ୍ର ହୋସ୍ତେ । ରାମ ସୁଭଦ୍ରା ରୂପେ ଶୋହେ ॥
କୃଷ୍ଣ ଯେ ହୋସ୍ତେ ଜଗନ୍ନାଥ । ଶ୍ୟାମ ସୁଦର୍ଶନ ସମ୍ଭୂତ ॥
ହ୍ରୀଁ ବଳଭଦ୍ର କହି । ଶ୍ରୀଁ ଯେ ସୁଭଦ୍ରା ଅଟଇ ॥
କ୍ଲୀଁ ଅଟଇ ଜଗନ୍ନାଥ । ଦାମ ସୁଦର୍ଶନ ସମ୍ଭୂତ ॥
ନନ୍ଦ ଅନନ୍ତ ରୂପ ଶୋଭା । ନନ୍ଦ ସୁଭଦ୍ରା ବେଜ ଆଭା ॥
ଦାନ ଅଟଇ ଜଗନ୍ନାଥ । ଧର୍ମ ବ୍ରହ୍ମ ଯେ ଏ ଚତୁର୍ଥ ॥
ସାଧୁ ଯେ କାମପାଳ କହି । ମଧୁ ସୁଭଦ୍ରା ରୂପ ହୋଇ ॥
କାମ ଯେ ଜଗନ୍ନାଥ ଜାଣ । ବ୍ରହ୍ମ ଯେ ସୁଦର୍ଶନ ପୁଣ ॥
ଏମନ୍ତେ ଗୃହ ଗୃହ ନାମ । ଏହି ଯେ ଅଟେ ହରେ ରାମ ॥
ହ୍ରୀଁ ଅକ୍ଷରୁ ହରେ ଜାତ । କ୍ଲୀଁ ଅକ୍ଷରୁ କୃଷ୍ଣ ଖ୍ୟାତ ॥
ଶ୍ରୀଁ ଅକ୍ଷରୁ ରାମ ହୁଏ । ଉଲଟେ ତିନି ନାମ କହେ ॥
ହରେ ରାମ ଯେ କୃଷ୍ଣ ତିନି । ସଂସାରେ କରନ୍ତି ଭ୍ରମଣି ॥
ପୁଣ ଯେ ଚୈତନ୍ୟ ଠାକୁର । ସେ ପୁଣ ମନ୍ତ୍ର କଲେ ଆର ॥
ଠାକୁରାଣୀ ଯେ ମନ୍ତ୍ର କର । ଶ୍ରୀଁ ବୀଜରୁ ସେ ସଞ୍ଚର ॥
ଶ୍ରୀଁ ରାଧିକାୟୈ ନମଃ । ମନ୍ତ୍ର ଭିଅଇଲେ ଉତ୍ତମ ॥
କ୍ଲୀଁ ବୀଜୁଁ କୃଷ୍ଣ ନାମ । କ୍ଲୀଁ କୃଷ୍ଣାୟ ଯେ ନମଃ ।
ରାମଶ୍ୟାମ କୃଷ୍ଣରୁ କର । ଶ୍ରୀ ରାଧା କୃଷ୍ଣ ମନ୍ତ୍ର ଧର ॥
ରାଧେ ଶ୍ୟାମ ଯେ ରାଧାକୃଷ୍ଣ । ଶ୍ୟାମ ବେଦରୁ ଉତପନ୍ନ ॥
କୃଷ୍ଣ କୃଷ୍ଣ ଯେ ରାଧେ ହୋଇ । ଏମନ୍ତେ ମନ୍ତ୍ର ପ୍ରକାଶଇ ॥
ଜନ ବଲ୍ଲଭ ହ୍ରୀଁ ବୀଜେ । ଗୋପୀ ଶୀରେ ଯେ ବିରାଜେ ।

କ୍ଳୀଁ କୃଷ୍ଣାୟ ଯେ ନମ । ଗୋପାଳ ମନ୍ତ୍ର ଯେ ଉତ୍ତମ ॥
କାମ ଗାୟତ୍ରୀ ଯାହା କହ୍ନି । ଆକାର ମାତ୍ରାରୁ କ୍ଷରଇ ॥
ବ୍ରହ୍ମ ଗାୟତ୍ରୀ ପୁଣ ଯେହ୍ନି । ଓଁକାର ଯନ୍ତ୍ରୁ ପ୍ରକାଶଇ ॥
ରୁଦ୍ର ଗାୟତ୍ରୀ ମକାରେଣ । ଅଧରେ ଛନ୍ଦ ବସେ ପୁଣ ॥
ସିଦ୍ଧ ବସଇ ଅକାରରେ । ଧ୍ୟାନ ବସଇ ମକାରରେ ॥
ରୂପ ଯେ ଓଁକାରେ ବସଇ । ସ୍ତୁତି ଯେ ଅର୍ଦ୍ଧ ମାତ୍ରା ହୋଇ ॥
ପଣ ଯେ ବସଇ ସି ରେ । ର ଯେ ବସଇ ଧୀ ରେ ॥
ଶଶ ବସଇ ରକାରେଣ । ବଦ ଯେ ସ୍ତୁ ରେ ଗୋପନ ॥
ଏ ହରେ ରାମ ମନ୍ତ୍ର ସାର । ସକଳ ମନ୍ତ୍ର ଏ ଗର୍ଭର ॥
ଅଣ ଅକ୍ଷର ଏକାକ୍ଷର । ତାରକ ରାମ ପଞ୍ଚାକ୍ଷର ॥
ହରେ ରାମ ମିଶିଣ ପାଞ୍ଚ । ଏ ପାଞ୍ଚ ମନ୍ତ୍ର ମୂଳ ସଞ୍ଚ ॥
ଅଣ ଅକ୍ଷର ମୂଳ ହୋଇ । ଏକ ଅକ୍ଷର ଅଙ୍କୁରଇ ॥
ତାରକ ଅଟଇ ଯେ ଡାଳ । ଶ୍ୟାମ ପଞ୍ଚାକ୍ଷର ଫୁଲ ॥
ହରେ ରାମ ଯେ ଫଳ ହୋଇ । ଆବର ରସ ମନ୍ତ୍ର ତହିଁ ॥
ବୃକ୍ଷର ମୂଳରେ ବସିବ । କ୍ରମେ ବୃକ୍ଷପରେ ଉଠିବ ॥
ଡାଳରେ ଉଠି ପୁଣ୍ୟ ବାସ । ଘୋଷ ସୁଜନେ ସାଧୁ ଅଂଶ ॥
ଡାଳେ ଉଠିଲେ ଫଳ ଖାଇ । ଫଳର ରସ ଯେ ଜାଣଇ ॥
ମୂଳ ନ ଚହ୍ନି ଯେ ଉଦାସ । ଧାନରେ ଯେସନକି ଘାସ ॥
ଅଣ ଅକ୍ଷର ମନ୍ତ୍ର ଘୋଷ । ତେବେ ଜୀବର ପାପ ନାଶ ॥
ଏକା ଅକ୍ଷର ମନ୍ତ୍ର ଧ୍ୟାଇ । କଠୋର ପାପ ନାଶ ଯାଇ ॥
ତାରକ ରାମ ପଞ୍ଚାକ୍ଷର । ପ୍ରାରବ୍ଧ ପାପମାନ ହର ॥
ହରେ ରାମକୁ ଯେ ଜପିବ । ଫଳ ଯେ ପାପକୁ ଛେଦବ ॥
ଅଣଅକ୍ଷର ମନ୍ତ୍ର ଧରେ । କୋଟିଏ ଜନ୍ମ ପାପ ହରେ ॥
ଏକା ଅକ୍ଷର ଯେ ଜାଣଇ । ତା ରୋଗ ବ୍ୟାଧି କ୍ଷୟ ଯାଇ ॥
ମଲେଣ କୃଷ୍ଣ ପୁରେ ରହେ । କୃଷ୍ଣ ସେବାରେ ଚଉ ଦଏ ॥
ତାରକ ରାମ ପଞ୍ଚାକ୍ଷର । ରାମାଦ୍ଧ ଭଜ ଭବୁଁ ପାର ॥
ଶୁଣ ହେ ବାରଟିଆ ଦାସ । ଗୁଡ଼ୁଲ ଧନପଣ ଆଶ ॥

ତୁମ୍ଭର ବାର ଯେ ବରଷ । ଭକ୍ତରେ ବଳାଇଲ ଆଶ ॥
ବାର ବରଷ ଆମ୍ଭ ସେବା । ତାହା ତ ପଶୁରିଲ ଯେବା ॥
ଏଣୁ ପାଇଲ ମନ୍ତ୍ର ସାର । ତେଜିଲ ଧନ ପୁତ୍ର ଦାର ॥
ବାର ବରଷ ଦେଶାନ୍ତର । ଭ୍ରମିଲ ତୀର୍ଥ ବ୍ରତ କରି ॥
ଏବେ ତୃତୀୟ ପରବେଶ । ଚତୁର୍ଥ କାଳ ଅଟେ ଦୃଶ୍ୟ ॥
ଓଡ଼ରାଷ୍ଟ୍ରରେ ସ୍ଥାନ ଧରି । ରହ ତୁମ୍ଭେ ଯେ ମିଳିକରି ॥
ଉତ୍‌ଥାନ ମଥୁରି ଯେ ଦୁଇ । ବାଙ୍କି ମୁହାଣେ ରହ ଯାଇ ॥
ଗୋବିନ୍ଦ ବସ୍ତ୍ର ବେନି ଜନ । କୋଠ ଦେଶରେ କର ସ୍ଥାନ ॥
ସୁଦାମ ଆନନ୍ଦ ଯେ ଦୁଇ । ଖଣ୍ଡି ବିଶରେ ରହ ଯାଇ ॥
ପବନ ବୃନ୍ଦାବନ ପୁଣ । କୋଦଣ୍ଡା ବିଶେ କରି ସ୍ଥାନ ॥
ମୁକୁନ୍ଦ ଅନନ୍ତ ବାଳକ । ବୃନ୍ଦାବନ ଯେ ଗୁରି ଲୋକ ॥
ଯାଦବ ଗୋପ ଯେନ ମନ । ଟଙ୍କାର ବିଶେ କର ସ୍ଥାନ ॥
ପାଇକା ବିଶେ ? କ୍ରଜ ରହ । ଖଣ୍ଡିରେ ଭୁଅରଅ ଦେହ ॥
ଶାଇଲୋ ବିଶେ ଧର୍ମୁଁ ରହ । ସୁଆଙ୍ଗ ବିଶେ ରାମ ଥାଅ ॥
ଝାଡ଼ ଖଣ୍ଡରେ ସୁନପୁର । ବିଷ୍ଣୁ ଯେ ରହୁ ସେହିଠାର ॥
ତୁମ୍ଭେ ପଞ୍ଚ ଗୋପ ସଂସାର । ଛଡ଼ ଗୋପାଳରେ ବିହର ॥
ଖୋଲ କରତାଳ ନ ସାଧିଲ । ଦେଶାନ୍ତର ହିତ ନ ଗଲ ॥
ମଳିନ ହେବ ତୁମ୍ଭ ଅଂଶ । ତୁମ୍ଭ ଧ୍ୟାନରେ ନାହିଁ ଯଶ ॥
ତୁମ୍ଭେ ନରତେ ଭଣ୍ଡ ଖାଇ । ଯନ୍ତ୍ର ମନ୍ତ୍ରରେ ପଶ୍ୟ ନୋହି ॥
ଗୁରି ପୀଡ଼ି ଯେ ଜଡ଼େ ଯିବ । ପଞ୍ଚରେ ଏକ ଏକ ଥିବ ॥
ଯନ୍ତ୍ର ମନ୍ତ୍ରରେ ଶ୍ରଦ୍ଧା କରି । ଏକକୁ ଆରେକ ପଗୁରି ॥
ବାରଟିଆ ଯେ ଦାସ ଘର । ଘୋଷି ଉଜ୍ଜ୍ୱଳ କୀର୍ତ୍ତନର ॥
ମଳିନ ଗୁରି ପୀଢ଼ିଠାରେ । ଉଜ୍ଜ୍ୱଳ ଏକ ଏକ ନରେ ॥
ଛଡ଼ ଗୋପାଳ ବଇରାଗୀ । ସ୍ତ୍ରୀ ସଙ୍ଗତେ ନାହିଁ ଭୋଗୀ ॥
ବଇରାଗୀ ବା ନପୁଂସକ । ଏଥୁଁ କରୂପେ ହେବେ ଲୋକ ॥
ଉତ୍‌ଥାନ ପବନ ମଥୁରି । ବୃନ୍ଦାବନ ଯେ ମଧୁଧାରି ॥
ଆନନ୍ଦ ମିଶି ଛଡ଼ ନର । ଏଥି ନଥିବେ ଅଂଶ ଆର ॥

ଯାଦବ ବାଳକ ସୁଦାମ । ଅଂଶ ଅଳପସ୍ତବେ ସମ ॥
ମୁକୁନ୍ଦ ଦାସର ଅଂଶରେ । କିଛି ଅଂଶ ବା ଏଥି ଧରେ ॥
ମଧୁସ୍ତ ଅଂଶ ଚିରଞ୍ଜୀବ । ଗୋପ ଯେ କୁଳରେ ଦୁର୍ଲଭ ॥
ତୁମ୍ଭେ ଯେ ସ୍ଥାନମାନ କର । ଦାସ ପୁତ୍ର ହେବେ ତୁମ୍ଭର ॥
ଅଚ୍ୟୁତ ପଥ ଭସାଇବ । ଗୋପ ବାଳକ ମିଶାଇବ ॥
ତୁମ୍ଭ ଅଂଶରେ ମିଶି ଅଂଶ । ଗୋପାଳ କୁଳେ ହେବେ ଦାସ ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟ ଖଣ୍ଡେ ଗୋପାଳ ମନ୍ତ୍ର
ମୂର୍ତ୍ତି କଥନେ ଶ୍ୟାମ ରାଧା କୃଷ୍ଣ ବର୍ଣ୍ଣନେ
ନାମ ଊନତ୍ରିଂଶ ପଟଳ ।

———

## ତ୍ରିଂଶ ପଟଳ

କହ ପରମ ଗୁରୁ ଦେବ । ଏ ଶିବ ପଞ୍ଚାକ୍ଷର ଭାବ ॥
ବସର ବସର ପରୁର । ତୁମ୍ଭେ ବବେକ ଅଟ ବାର ॥
ଆଉ ଆଦତ ବେନକ୍ଷର । ଅଉ ଯେ ପାର୍ବତୀ ଶରୀର । ୩ ।
ଅକାର ମିଶି ପଞ୍ଚକଳା । ପଞ୍ଚ ଅକ୍ଷର ଏଥୁଁ ହେଲା ॥

---

୩—ଖ, ଗ—

ସକାର ପାଶେ ଷୋଳ ସ୍ୱର । ଆଠ ଅ.ଠ ଯେ ବସାଗର ॥
ଅକାର ମହେଶଟି ଜାଣ । ମୁକାର ଆଦ୍ୟ ଶକ୍ତି ପୁଣ ॥
ଅକାର ଅ.ଦ୍ୟ ନ' ପାଦ । ହସ୍ତ ଶିର ଉପର ଭେଦ ॥
ଅକାର ଆଦ୍ୟ ନଅ ଯେହ୍ନ । ଚରଣ ବୋଲି ତାହା କହ୍ନ ॥
ଉପର ଶିର ହସ୍ତ ଶୋଭା । ଈଶ୍ୱର ପାର୍ବତୀ ସେବବା ॥

ଅଙ୍ଗରୁ ଅଉ ହେଲା ଜାତ । ନଅ ଏ ଅକାରୁ ସମ୍ଭୂତ ॥
ମ ଅକାରୁ ଜାତ ହୋଇ । ଶିଁ ଯେ ଅକାର ଷରଇ ॥
ଓଁକାରୁ ବା ସଞ୍ଚରିଲା । ସ୍ତୃ ଅଇସ୍ବକୁ ଧଇଲା ॥
ଏମନ୍ତେ ଶିବ ପଞ୍ଚାକ୍ଷର । ଓଁ ନମ ଶିବାସ୍ବ ବଗ୍ବର ॥
ଓଁ ଅଙ୍ଗ ଯେ ମିଶି ଷୋଳ । ଈଶ୍ୱର-ପାର୍ବତୀଙ୍କ ସ୍ଥଳ ॥
ଓଁକାର ଅକ୍ଷର ଗୁଣନ୍ତି । ଯୋଗ ସାଧୁ ଯେ ଜନ ମୂର୍ତ୍ତି ॥
ଧର୍ମ ଅର୍ଥ ଯେ କାମ ମୋକ୍ଷ । ଭଜିଲେ ହଅଇ ପ୍ରତ୍ୟକ୍ଷ ॥
ଦେବତା ଋଷିଗଣମାନେ । ଗନ୍ଧର୍ବ ଆଦି ଯେତେ ଜନେ ॥
ନର ଆଦି ଏ ସୁମରଣ । ଲଭିଲେ ଅର୍ଥ ଧନ ପୁଣ ॥୧୩॥
ପାର୍ବତୀ ବାମ ପାଶେ ବସେ । ଯୋଗ ଭକ୍ତି ମିଶାଇ ଘୋଷେ ॥
ଯେତେକ ଜୀବ ଜନ୍ତୁ ହୃଦେ । ବିଜୟେ କରେ ମାୟା ଛନ୍ଦେ ॥
ଏଣୁ କି ଜୀବଶିବ ଏକ । ପାଣି ପବନୁ ଜୀବ ଲୋକ ॥
ଏରୂପେ ମନ୍ତ୍ର ଯେ ସୁମରେ । ଦୟା କରଇ ଶିବ ତାରେ ॥
ନାମର ଭେଦ ଯେ ଜାଣଇ । ନାମ ରାଧାକୃଷ୍ଣ ସେ ପାଇ ॥
କଳିଯୁଗରେ ଶିବ ଜାତ । ନଦିଆ ସ୍ଥଳେ ଯେ ଅଦ୍ୱୈତ ॥
ତେଣୁ ଯେ ଆଦିଗୁରୁ ହୁଏ । ଅଦ୍ୟ ମନ୍ତ୍ରର ସେତୁ କହେ ॥
ସ୍ୱର୍ଗ ମର୍ତ୍ତ୍ୟ ଯେ ତ୍ରିପୁର । ଈଶ୍ୱର ଲୀଳା ଖେଳ ଘର ॥
ଏ ଷୋଳଦଳ ସୁମରିବ । ଏମନ୍ତେ ଶିବଙ୍କୁ ତୋଷିବ ॥
ଦ୍ୱାର ସ୍ଥଡ଼ିଣ ଦେବେ ଦେଇ । ରାମ କୃଷ୍ଣ ସେବାରେ ରହି ॥

---

୧୩—ଖ, ଗ—

ମହାଯୋଗୀ ଯେ ମହେଶ୍ୱର । ସୁମର ମହା ପାପ ହର
ଶିବ ଯେ ଜଗତର ନାଥ । ସର୍ବ ଦେବଙ୍କ ଶ୍ରେଷ୍ଠ ଯେ ତ ॥
ବାହାନ ବୃଷଭ ଉପର । କଣ୍ଠରେ ସର୍ପ କର ହାର ॥

ଶୁଣ ମୁକୁନ୍ଦ ମଧୁ ଦାସ । ଅନନ୍ତ ବଳ ନନ୍ଦ ଦାସ ॥
ଲୋହ ଗ୍ରାମ ଯେ ରହୀ ଗ୍ରାମ । ନିରଞ୍ଜନ ବେଦହେର ଉତ୍ତମ ॥
ଚରଣ ଗୋପାଳେ ହେ ଘେନ । କହଇ ଅଚ୍ୟୁତ ଅଧମ ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟ ଖଣ୍ଡେ ଶିବ-
ପଞ୍ଚାକ୍ଷର ମୂର୍ତ୍ତି ଉତ୍ପତ୍ତି କଥନେ
ନାମ ତ୍ରିଂଶ ପଟଳ ।

—:0:—

## ଏକତ୍ରିଂଶ ପଟଳ

ଦକ୍ଷିଣ ଚନ୍ଦ୍ର କୃଷ୍ଣ ଦେବ । କନ୍ଦ ମୁକୁନ୍ଦ ଯେ ଯାଦବ ॥
ମୁକୁନ୍ଦ ଆନନ୍ଦ ପଗ୍ରିତ । ଦ୍ୱିଥ ଦେବ ହିଁ ମୂର୍ତ୍ତି କତ ॥
ନାରାୟଣର ମନ୍ତ୍ର ବିଧି । କିରୂପେ ମନ୍ତ୍ର ମୂର୍ତ୍ତି ସିଦ୍ଧ ॥
ଶୁଣ ପରମ ସାଧୁ ଦାସ । ଦ୍ୱିଥ ମୁକୁନ୍ଦ ବେନ ଅଂଶ ॥
ଷୋଳ ଦଳରେ ଷୋଳକ୍ଷର । ସେ ପଦ୍ମେ ନାରାୟଣ ପର ॥
କ ର ଆଦ୍ୟ ହ ଦ୍ୱିଏ । ହ୍ରୀଂ ଏଥିରୁ ସଞ୍ଚରଯେ ॥
କ କାର ଆଦ୍ୟ ଯେ ଚରଣ । କଅର ପର ହସ୍ତ ଜାଣ ॥
କ ଅର ପ୍ରାନ୍ତ ଭୁଜ ଶୋଭା । ନାଦକୁ ଦଭୁଜ କରିବା ॥
ବିନ୍ଦୁ ନୟନ ନାସା ଶିର । କର୍ଣ୍ଣ ଭୂଷଣ ହୃଦ ତାର ॥
ଏମନ୍ତେ ଚତୁର୍ଭୁଜ ଧର । ଅଛନ୍ତି ସେ ସ୍ଥଳେ ବିହର ॥
ଆବର ନଅ ଯେ ଅକ୍ଷର । ଲକ୍ଷ୍ମୀର ଅଟଇ ବେହାର ॥
ଅ ମାତାରେ ନଅ କଳା । କ କାରୁ ପାଦ ଜାତ ହେଲା ॥
ଉପର ଶିର ହସ୍ତ ନାସା । ମୁଖ ନୟନ କର ଆଶା ॥
ଏ ରୂପେ ଲକ୍ଷ୍ମୀ ନାରାୟଣ । ହୃଦ ପଦ୍ମରେ ମିଳା ଜାଣ ॥
ହ୍ରୀଁ ନାରାୟଣ ନମଃ । ଏ ଅଠ ମନ୍ତ୍ରଙ୍କ ଉତ୍ତମ ॥

ଏ ମନ୍ତ୍ର ସୂରର ଠାକୁର । ଗୃଣେ ଭଜନ୍ତି ହୃଦୟର ॥
ସ୍ୱାଁ ଯେ କ ରୁ ସଞ୍ଚରେ । ନା ଯେ ଅ ଅ ରୁ ପ୍ରଚରେ ॥
ସ୍ୱା ଯେ ଚ ରୁ ହୋଇଲା । ଅସ୍ତୁ ଯେ ଯ ରୁ ଜନ୍ମିଲା ॥
ୟ ରୁ ଅ ଅସ ନଣ ଜାତ । ଅଷ୍ଟ ଅକ୍ଷରେ ଯେ ସମ୍ଭୂତ ॥
ଏମନ୍ତ ଜପି ତୁମ୍ଭେ କର । ଗୋଲକ ସ୍ଥଳରେ ବହର ॥
ନାରାୟଣ ଯେ ଗୁରୁ ଜାଣ । ତାଙ୍କୁ ସେବନ୍ତି ସାଧୁଗଣ ॥
ଗୁରୁ ସେବଲେ କୃଷ୍ଣ ପାଇ । କୃଷ୍ଣଙ୍କ ଗୁରୁ ବୋଲି କହି ॥
ଗୁରୁଟି ଜଗତର କରତା । ଗୁରୁଟି ଅଟେ ପିତା ମାତା ॥
ବଷ୍ଠ ମଙ୍ଗଳ କାଳେ ପୁଣ । ଗୁରୁ ସନ୍ତୋଷେ ଶୁଭ ପୁଣ୍ୟ ॥
ପ୍ରଭାତେ ଗୁରୁ ସୁମରଣ । ଅକାଳ ଖଣ୍ଡଇ ଯେ ପୁଣ ॥
ସନ୍ଧ୍ୟାରେ ଗୁରୁ ଦଣ୍ଡବତ । ଦବାର ପାପ ଯାଇ ହତ ॥
ପୂର୍ଣ୍ଣିମୀ ଅମାବସ୍ୟା ଦିନରେ । ମିଳନ୍ତି ଯେ ଉଷା ସନ୍ଧ୍ୟାରେ ॥
ଏକାଦଶୀ ଯେ ସଂକ୍ରାନ୍ତି । ଯା ଗୃହେ ଗୁରୁ ଯେ ମିଳନ୍ତି ॥
ଗୃହ ପ୍ରବେଶ ବଷ୍ଠ ବେଳ । ଗୁରୁ ମିଳନ୍ତି ଯାର ଦ୍ୱାର ॥
ମାତା ପିତାର ଶ୍ରାଦ୍ଧ ଦିନ । ଯେ କରେ ଗୁରୁ ଦରଶନ ॥
ଦର୍ଶନ ପ୍ରାଣ ପ୍ରୟାଣରେ । ଗୁରୁ ମିଳନ୍ତି ଯାର ଦ୍ୱାରେ ॥
ଏକାଳେ ଗୁରୁ ସେବା କଲେ । ଯମ ଦଣ୍ଡ ଯେ ନାହିଁ ତାରେ ॥
ଶୁଣ ଯେ ବାରଟିଆ ଦାସ । ଏକାଳେ ମିଳି ଆମ୍ଭ ପାଶ ॥
ସହାସ କୀର୍ତ୍ତନ କରିବ । ଗୁରୁଙ୍କ ଦର୍ଶନେ ତରିବ ॥
ବାର ଜଣରେ ତୁମ୍ଭେ ସାର । ମୁକୁନ୍ଦ ଅନନ୍ତ ଦୀନର ॥
ଅଚ୍ୟୁତ ବଚନ ପାଳିବ । ଗୋପାଳ କୁଳେ କଥା ଥିବ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ ନାରାୟଣ
ମନ୍ତ୍ର ମୂର୍ତ୍ତି ଭେଦ କଥନେ ନାମ
ଏକତ୍ରିଂଶ ପଟଳ ।

———

# ଦ୍ୱାତ୍ରିଂଶ ପଟଳ

ବାଳକ ସୁଦାମ ମଥୁର । ଶିରରେ ବେଢ଼ କର ଯୋଡ଼ି ॥
ଦଣ୍ଡା କରିବା ବାରେ ଆତ୍ମ । ଗୁରୁଦେବ ଆତ୍ମ ମନ ଦମ୍ଭ ॥
ବ୍ରହ୍ମ ଗାୟତ୍ରୀ ମନ୍ତ୍ର କଥା । କହ ହେ ଗୁରୁ ମନ ବ୍ୟଥା ॥
ଶୁଣ ମୁକୁନ୍ଦ ହେ ସୁଦାମ । ଏ ମନ୍ତ୍ର ପାଞ୍ଚ ହେ ଉତ୍ତମ ॥
ବାର ଦଳରେ ଦଶାକ୍ଷର । ବ୍ରହ୍ମର ତହିଁ ଅଟେ ଘର ॥
ତ ଅକ୍ଷର ଯେ ବ୍ରହ୍ମ ହୋଏ । ତ ଅ ତଳରେ ପାଦ ଶୋହେ ॥
ତଅର ଆଦ୍ୟ ଭୁଜ ଯେହୁ । ଇକାର ଆଦ୍ୟ ଭୁଜ ହୋଇ ॥
ଇକାର ପର ଶିର ଜାଣ । ବ୍ରହ୍ମ ସ୍ୱରୂପ ଏ ପ୍ରମାଣ ॥
ପ ଅ ଯେ ପାର୍ବତୀ ଅଟଇ । ପ ଅ ପାରୁଶେ ସ ରହ୍ମ ॥
ଏଗାର ଦ ଭୁଜ ଅଟଇ । ପ ଅ ତଳ ଯେ ଚରଣ ହିଁ ॥
ପ ର ଉପରେ ଶିର କର । ବ୍ରହ୍ମ ସାବିତ୍ରୀ ଏଥି ଧର ॥
ବ୍ରହ୍ମ ଗାୟତ୍ରୀ ମନ୍ତ୍ର ବଶେ । ଗୋଲୋକ ଏହା ଘୋଷି ମିଶେ ॥
ଭୂ ଭୁବ ସ୍ୱ ମହ ଜନ । ତପଃ ସତ୍ୟ ଏ ମନ୍ତ୍ର ଘେନ ॥
ଆପ ଯେ ଜ୍ୟୋତି ରସାମୃତ । ବ୍ରହ୍ମ ଭୂରୁ ଯେ ମନ୍ତ୍ର ଘେତ ॥
ଭବ ସରୋଜ ଦଣ୍ଡା କର । ବ୍ରହ୍ମ ଗାୟତ୍ରୀ ମନ୍ତ୍ର ଧର ॥
ତ ରୁ ଭୂରୁ ଭବ କ୍ଷରେ । ଶ ରୁ ମହତ ପ୍ରଚରେ ॥
ଅ ରୁ ଜନ ଯେ ହୋଇଲା । ର କାରୁ ବସି ଜନମିଲା ॥
ତ ରୁ ତପନ ଉଦ୍ଧତ । ସ ରୁ ସତ୍ୟ ଯେ ସମ୍ଭୂତ ॥
ଆପ ଯେ ଥ ରୁ ସଞ୍ଚର । ଥ ରେ ନଅ କଳା ଧର ॥
ତ ରୁ ଜାତ ଯେ ଶବଦ । ଶ ଆଦ୍ୟରେ ରସ ଭେଦ ॥
ଦ ଅ ରୁ ଅମୃତ କ୍ଷରିଲା । ବ୍ରହ୍ମ ଭୂରୁରେ ବାସ କଲା ॥
ଭୁବ ସ୍ୱର୍ଗେ ଦଣ୍ଡାପଥ । ତ ରୁ ଏତେ କ୍ଷର ଜାତ ॥
ବ୍ରହ୍ମ ଗୋପାଳ ଯେଣୁ କହ୍ନ । ଜ୍ୟୋତି ଧାଇଲେ ଗୋପଗୋଇ ॥
ଜ୍ୟୋତି ଚର୍ଚ୍ଚିଲେ ଯେ ବ୍ରାହ୍ମଣ । ଜ୍ୟୋତିଃ ସାଧନେ ବ୍ରହ୍ମଜ୍ଞାନ ॥
ଜ୍ୟୋତି ଜାଣିଲେ ଯୋଗୀ ଜନ । ଜ୍ୟୋତି ସକଳ ଜୀବ ବ୍ରହ୍ମ ॥

ବ୍ରହ୍ମ ଗାୟତ୍ରୀ ଜପ କର । ମରଣ ପଥରୁ ନିସ୍ତର ॥
ମରଣ କାଳେ ଯେହୁ ଜ୍ଞାନ । ଏମନ କହଇ କାରଣ ॥
ତୁମ୍ଭେ ଚବଶ ଗୋପ ଦାସ । ଏମନ୍ତ ଶୁଣି ପାପ ନାଶ ॥
ମୃତ୍ୟୁ କାଳରେ ପ୍ରାଣୀ ଯେତେ । ତୁମ୍ଭଙ୍କୁ ନ ଲୋଡ଼ିବେ ଚତ୍ୱେ ॥
ଏ ହଂସ ମନ୍ତ୍ର ସୁମରିବେ । ପ୍ରାଣୀଙ୍କ ପାପ ବିନାଶିବ ॥
ଖୋଲ କଣ୍ଠିଳେ ରସ କର । ଉଦ୍ଧାର କରିବ ସଂସାର ॥
ଶୁଣ ହେ ଅନନ୍ତ ମୁକୁନ୍ଦ । ପବନ ଉତ୍ଥାନ ଆନନ୍ଦ ॥
ଅଚ୍ୟୁତ ଦାସ ଗଣ ଯେତେ । ତୁମ୍ଭର ହୃତେ ଏହୁ ଗୀତେ ॥
ଏ ବାରଜଣ ପଚାରିଲେ । ତୁମ୍ଭଙ୍କୁ ପଥ ଦେଖାଇଲେ ॥
ଜଗତେ ଏ ଗୀତା ପଢ଼ିବ । ଉତ୍ତମ ଗୁରୁଙ୍କୁ ପୁଛିବ ॥
ଯନ୍ତ୍ର ମନ୍ତ୍ର ଯେ ତନ୍ତ୍ର ଜାଣ । ଅଷ୍ଟ ପ୍ରହର ରସ ଚିହ୍ନ ॥
ଶୂନ୍ୟା ଅବାଡ଼ ଯେ ସମାଧି । ଜ୍ୟୋତିକ ଯେହୁ ଥିବ ସାଧି ॥
ଏ ଆଠ ଗୁଣ ସାଧିଥିବ । ସେ ଜନ ଏ ପାଠ ବୁଝିବ ॥
ମନ୍ତ୍ର ପଚାରିଣ ଶିକ୍ଷା ଗୁରୁ । ମୁ କାର ପଣେ ମତ ଗରୁ ॥
ବସ୍ତ୍ର ଧନରେ ଲୋଭ ବହି । ଶିଷ୍ୟ କରନ୍ତି ଗୁରୁ ହୋଇ ॥
ଏ ପାଠ ଯେହୁ ନ ଜାଣନ୍ତି । ବିଅର୍ଥେ ସଂସାରେ ଭ୍ରମନ୍ତି ॥
ତୁମ୍ଭେ ଛାଡ଼ିଲ ଧନ ପଣ । ସେବିଲ ଗୁରୁଙ୍କ ଚରଣ ॥
ବାର ବରଷ ପଚାରିଲ । ଜଳ କୁମ୍ଭରୁ ଚଳେ ନେଲ ॥
ରହିଲ ତୁମ୍ଭେ ଦଳ ଯାକ । ତୁମ୍ଭେ ତ ଅଟ ହେ ବିବେକ ॥
ବାର ବରଷ ବାର ଦିନ । ଗୁରୁଙ୍କୁ ନ ପୁଛେ ବଚନ ॥
କିଏ ଜାଣିବ ଏଥି ଭାବ । କଢ଼ି ପୁଷ୍ପ କି ବାସ ହେବ ॥
ଗୁରୁଙ୍କୁ ସେବ ଯେ ପଚାରେ । ବାସନା ପୁଷ୍ପ ସେହୁ କରେ ॥
ଗୁରୁ ନ ସେବ ନ ପଚାର । କଢ଼ି କୁସୁମ ସେହୁ ସର ॥
ଫୁଟିଲ ପୁଣ୍ୟ ବାର ଦାସ । ଅଚ୍ୟୁତ ବଚନ ହେ ଘୋଷ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ଶୂନ୍ୟଖଣ୍ଡେ ବ୍ରହ୍ମସାବିତ୍ରୀ
ମନ୍ତ୍ର କଥନେ ନାମ ଦ୍ୱାତ୍ରିଂଶ ପଟଳ ॥

---

# ନବଦ୍ୱିଂଶ ପଟଳ

ଯାଦବ ମୁକୁନ୍ଦ ଅନନ୍ତ । ଆମ୍ଭ ବିନୟ ଶୁଣୁ ଚିତ୍ତ ॥
କାମଦେବର ସ୍ଥାନ କହ । ଫିଟିବ ମନର ସନ୍ଦେହ ॥
ଯାଦବ ଅନନ୍ତ ହେ ଶୁଣ । ମୁକୁନ୍ଦ ପଣ୍ଡିତ ସୁଜାଣ ॥
ଦଶ ଦଳର ପରେ ପୁଣ । ଛଡ଼ ଅକ୍ଷର ପରମାଣ ॥
ବ (ଅ) ଭ (ଅ) ଯେ ମ (ଅ) ଘେନ ।

ଯ, ର, ଲ, ଅ କୁ ଘେନ ॥

ବ, ଭ, ଗ, ଯ, ର, ଲ ।

ଏମନ୍ତେ ଷଡ଼ ଯେ ଅକ୍ଷର । କାମାକ୍ଷି କାମଦେବ ଘର ॥
ବ ରେ ଗାର ଯେ ବସିଲେ । ଉପରେ ଇକାର ଥୋଇଲେ ॥
ଆବର ଏକ ଗାର ଦେବ । ପଢ଼ିଲେ କାଅକ୍ଷର ହେବ ॥
ମ' ଅକ୍ଷର ମିଶାଇବ । ଦରେ ଦେବ ଦୁଇ ହେବ ॥
କା ଅକ୍ଷରକୁ ଯେ ଅଣି । ମ ରେ ମାତ୍ରା ଦେବ ପୁଣି ॥
ଯ ରେ ଇକାର ଯେ ରଖ । ମଧ୍ୟ, ମାତ୍ରର ଭୂଜ ଦେଖ ॥
ଯ ର ତଳପାଦ ହୁଏ । ଉପରେ ଶିର ନାସା ଶୋହେ ॥
କାମାକ୍ଷୀ ଦେବୀ ଏ ଅଟଇ । ଏ ମାୟା ଦେବୀ ସର୍ବ ମୋହ ॥
ବ ରେ ଗାର ଦେଲେ ପୁଣ । ସେ ହୋଏ ଦୁଇ ଯେ ଚରଣ ॥
ଉପର ଶିର ଭୁଜ ମୁଖ । କଳାରୁ କଳା ପଞ୍ଚେ ଦେଖ ॥
ଯେସନେ ବୀଜେ ସର୍ବ ଥାଇ । ଚେର ପତ୍ର ଯେ ଫଳ ହୋଇ ॥
ଡାଳ ସହିତେ ବୃକ୍ଷ ବଢ଼େ । ତେସନେ ବୀର୍ଯ୍ୟ ବୀଜ ଗଢ଼େ ॥
କାମଦେବ କାମାକ୍ଷୀ ନାମ । ଏ ମନ୍ତ୍ର ଜପିବ ଉତ୍ତମ ॥
ବ ରୁ ଇ ଅ ସଞ୍ଚରଇ । ମ ଅକ୍ଷର ମିଶେ ତହିଁ ॥
ବ ରେ ଦେବ ଯେ ଅକ୍ଷର । ଇ ଯେ ଯ ଅକ୍ଷରର ॥
କ ରୁ ନ କଳା ଏକ । ମ ମିଶିଲେ ମନ୍ତ୍ର ଏକ ॥
ଏ ମନ୍ତ୍ର ଜପି ଧ୍ୟାନ କର । ଏରୂପ ଚନ୍ଦ୍ରବ ହୃଦର ॥

ତେବେ କାମ କୃଷ୍ଣଙ୍କ ପାଇ । ଦ୍ୱାରେ କାମାକ୍ଷୀ ଦେବୀ ଥାଇ ॥
ସନ୍ତମାନଙ୍କ ସନ୍ତପଣ । କାମାକ୍ଷୀ ଭୃଙ୍ଗି ଦିଏ ଟାଣ ॥
ସନ୍ତମାନଙ୍କ ସତ୍ୟବ୍ରତ । କାମ ଯେ ଭୃଙ୍ଗର ନିସ୍ତୃତ ॥
ନୟନ ମଧ୍ୟେ କାମକଳା । ପ୍ରାଣୀ ଯେ ଦେଖି ହୋନ୍ତି ଭୋଳା ॥
ସର୍ବ ସମ୍ପଦ କାମ ଅଂଶ । ଶୁଣିଲେ ପ୍ରାଣୀ ଯେ ଅବଶ୍ୟ ॥
ଭ୍ରୂରୁ ମଧ୍ୟରେ ନିତ୍ୟ ସ୍ଥାନ । ଏ କାମ ଅଟେ ଜୀବ ଜାଣ ॥
ଏଣୁ ଏ କାମକୁ ସାଧିବ । ଅଲପ ଅଲପେ ରଖିବ ॥
ଷଡ଼ ଗୋପାଳ ନପୁଂସକ । କାମ କଳାକୁ ନାହିଁ ଶୋକ ॥
ଆବର ସ୍ତ୍ରଡ଼ ଗୋପ ଦାସ । କାମକୁ କରିବ ଅଭ୍ୟାସ ॥
ଶନି ରବି ଯେ ମଙ୍ଗଳରେ । ଦଶମୀ ପୌର୍ଣ୍ଣମୀ ତିଥିରେ ॥
ଚତୁର୍ଦ୍ଦଶୀ ଅମାବାସ୍ୟା ଦିନ । ପଦ୍ମପ ପାହାନ୍ତି ଆସନ ॥
ସଯୋଗୀ ଯୋଗ ଏ ଧାରଣ । ଛଡ଼ ଗୋପାଳେ ତୁମ୍ଭେ ଜାଣ ॥
ଆବର ଧାରଣା ସାଧନ । ସଙ୍ଗ ହୋଇବ ଯେତେ ଦିନ ॥
ସର୍ପ ଫଣାକୁ ଓଲଟାଇ । ରଖିବ ଘଣ୍ଟିକାରେ ନେଇ ॥
ପବନ ନିରୋଧ କରିବ । ବିନ୍ଦୁ ଯେ ନିଷ୍ଟଳେ ରହିବ ॥
କୋଟିକେ ଗୋଟିଏ କରନ୍ତି । ଏ ବଡ଼ କଷ୍ଟସାଧ ହୋନ୍ତି ॥
ପାରିଲେ ଏ ପଥ ଧରିବ । ନୋହିଲେ ସଯୋଗେଣ ଥିବ ॥
ସନକାଦିମାନେ ଏ ପଥ । ସାଧନ କରନ୍ତି ନିସ୍ତୃତ ॥
ଜନକାଦି ଯେ ସନକାଦି । ଦିପଥେ ପ୍ରାଣୀମାନେ ବନ୍ଦୀ ॥
ଭୋଜନ ସାଧି ନ ପାରନ୍ତି । ଏ ବଡ଼ କଷ୍ଟେ ସାଧ ହୋନ୍ତି ॥
ଭଜନ କରନ୍ତି ବହୁତ । ସେ ଗମେ ଜନକାଦି ମତ ॥
ଅଲପ ଭୋଜନ ଯେ କରେ । ସନକାଦି ଯେ ପଥ ଧରେ ॥
ଦୁଇ ପଥରେ ବୀର ଦାସ । ମିଶିଣ କର ହେ ରହାସ ॥
ମୁକୁନ୍ଦ ଅନନ୍ତ ସୁଦାମ । ଗୋବିନ୍ଦ ଯାଦବ ବଛମ ॥
ଜନକାଦି ଯେ ଛଡ଼ ଧର । ଅଂଶ ରଖିଣ ଖତ କର ॥
ଉତ୍ଥାନ ପବନ ଦି ଜଣ । ମଥୁର ବୃନ୍ଦା ଗୃହଜଣ ॥
ସନକାଦି ସେ ପଥ ଧର । ଭକ୍ତ ପକ୍ଷ ତୁମ୍ଭେ ସାର ॥

ନାଦ ପୂଜ ଯେ ତୁମ୍ଭେ କର । ନାଦ ପୂଜନ୍ତି ସବୁ ସାର ॥
ମଧୁ ସନକ ପଥ ଧର । ବାଳକ ଜନ ପଥ କର ॥
ଅଚ୍ୟୁତ ବଚନ ପାଳିବ । ଜଣି ତେ ସଂସାରେ ଖେଳିବ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ କାମଦେବ
କାମାକ୍ଷୀ ଦେବୀ ମନ୍ତ୍ର ମୂର୍ତ୍ତି ବର୍ଣ୍ଣନେ
ନାମ ତ୍ରୟୋବିଂଶ ପଟଳ ।

—*—

## ଚତୁଃବିଂଶ ପଟଳ

ମଧୁ ମଥୁର ଯେ ପଶ୍ୱର । ମୁକୁନ୍ଦ ଶିରେ କର ଧର ॥
ଅନନ୍ତ ଦାସ ଦୟାକର । ଏ ଗୁର ଦଳର ବଗ୍ସର ॥
ଅନନ୍ତ ଦାସ ତୁମ୍ଭେ ଶୁଣ । କର୍ଣ୍ଣ ଗୋପାଳ ବାରଜଣ ॥
ରାମ ଭରଥ ଧର୍ମ୍ମ ଦାସ । ବିଷ୍ଣୁ ବଳ ହେ ଦୁଇ ଅଂଶ ॥
ଛକ୍ର ତଳରେ ସ୍ୱର ବସେ । ବ ଅରେ ଶ ତହିଁ ମିଶେ ॥
ବ ଶ ଯେ ସ ଷ ସ୍ୱର । ଗଣପତି ଆଦି କୁମାରୀ ॥
ହୁଁ ଉରୁ ଗଣେଶ ଝଣିଲା । ଏ ଗଣପତି ନାମ ହେଲା ॥
ଶ ରୁ କ ନାମେ ହୋଇ । କୁମାରୀ ନାମ ସେ ବୋଲାଇ ॥
ପ ଅକ୍ଷରେ ଗାର ଦେବ । ସେ ପୁଣ ବେଳଭୁଜ ହେବ ॥
ତଳକୁ ପାଦ ଶୋଭବନ । ଉପର ଭୁଜ ଶିର ଜାଣ ॥
କୁମାରୀ ଦେଶ ଏ ଅଟଇ । ଉତ୍ଥାନ କରି ବସିଥାଇ ॥
ବ ର ତଳେ ଗାର ଦେବ । ଏ ବେଳ କରଣ ହୋଇବ ॥
ବ ରେ ସାତ ଅଙ୍କ ବସେ । ଏ ବେଳ ଭୁଜ ପରକାଶେ ॥
ମୁଖ ନୟନ ନାସା ଶିର । ଏ ଗଣପତିର ଶରୀର ॥
କୃଷ୍ଣର ପରମାନନ୍ଦ ନାମ । ଏ ମନ୍ତ୍ର ଜପିବ ଉତ୍ତମ ॥

କୃଷ୍ଣ ବ ରୁ ସଞ୍ଚରଇ । ସ ରୁ ରୂପ ଜନମଇ ॥
ପରମାନନ୍ଦ ନମାମ୍ୟହଂ । ଗଣପତିଙ୍କ ସ୍ତୁତି ଏହୁ ॥
ତେବେ ସେ ଦୁଆର ଛାଡ଼ଇ । ସ୍ୱମ କୃଷ୍ଣଙ୍କ ଭେଟ ପାଇ ॥
ଖୋଲରେ ଶିବ ବସିଥାଇ । ବାରରେ ବିଷ୍ଣୁ ବସିଛଇ ॥
ଦଶରେ ବ୍ରହ୍ମା ଯୋଗାସନ । ଛଡ଼ରେ କାମଦେବ ଜାଣ ॥
ସ୍ୱଶରେ ଗଣପତି ରହେ । ନାମ ଜପିଣ ବଡ଼ ହୁଏ ॥
ଡାହାଣ ଭାଗରେ ପରମ । ବାମ ଭାଗରେ ଜୀବ ଗମ୍ୟ ॥
ଜୀବ ପରମ ଏହୁ ଦୁଇ । ଅନେକ ଘଟ ସେ ଗଢ଼ାଇ ॥
ସ୍ଥାବର ଜଙ୍ଗମ ଯେ କୀଟ । ପତଙ୍ଗ ଆଦି ନାନା ଘଟ ॥
ନୂଆ ପୁରୁଣା କରୁଥାଇ । ମାଳା ଜନମନ୍ତେ ରୂପ ହୋଇ ॥
ସ୍ଥାନ ସ୍ଥାନକେ ମୂର୍ତ୍ତି ଧରେ । ଏକରୁ ବହୁ ରୂପ ଧରେ ॥
ମନ୍ତ୍ର ଅଟଇ ତାର ଯଥା । କଥା କରନ୍ତି ମଧୁପୋତା ॥
ପଞ୍ଚାଶ ଅକ୍ଷରଟି ସାର । ଅକ୍ଷରୁ ବାର ମାତ୍ରା ଧର ॥
ସକଳ ଗ୍ରନ୍ଥ ବୀଜ ଏହୁ । ପଣ୍ଡିତେ ଭେଦ ନ ଜାଣଇ ॥
ଜଳାଦ୍ରି ଯନ୍ତ୍ର ଯେ ଭେଦଛୁ । ତାକୁ ଆଳୁଅ ଦିଶୁଅଛୁ ॥
ଯାଳାଦ୍ର ଯନ୍ତ୍ର ଭେଦ ନାହିଁ । ସେହିଟି ବିଦ୍ୟା ଅନ୍ଧ କହି ॥
ଗୁରୁ ସେବିଲ ହୋଇ ଦାସ । ତେଣୁ ପାଇଲ ଯନ୍ତ୍ର ରସ ॥
ଅ ମ ଖଣ୍ଡ ତୁମ୍ଭ ହୃଦେ । ଦ୍ୱିତୀୟ ଖଣ୍ଡ କଲି ଗୀତେ ॥
ତୃତୀୟ ଖଣ୍ଡ ଏ ଶୁଣିଲ । ଜନ୍ମର ସୁଫଳ ଲଭିଲ ॥
କୃଷ୍ଣ କରୁଣା ମୋତେ କଲେ । ଗଣେଶ ହୃଦରେ ରହିଲେ ॥
ଏଣୁ ସକଳ ମୁନି ଗଣ । ଗଣେଶ ବନ୍ଦନ୍ତି ଅଗ୍ରେଣ ॥
ବିଘ୍ନହରତା ସେ ଅଟନ୍ତି । ବିଘ୍ନ ନ କଲେ ବିଦ୍ୟା ଦ୍ୟନ୍ତି ॥
ଶୁଣିଲ ଗଣପତି କଥା । ଜଳାଦ୍ରି ଯନ୍ତ୍ରର ବାରତା ॥
ତୃତୀୟ ଖଣ୍ଡ ଏ ଶୁଣିଲ । ମନରେ ଏହା ଘେନ ଭଲ ॥
ଏ ପାଠ ନିତି ଶୁଣୁଥିବ । ଶୁଣିଲେ ଅନ୍ଧାର ଫିଟିବ ॥
ମଦ୍ୟ ମାଉଁସ ଧୂମ ଗଞ୍ଜା । ପର ସ୍ତ୍ରୀଗକ କର ତେଜ୍ୟା ॥
ଅଶୁଚ ମିଛ ଯେହୁ କହି । ପର ଧନରେ ଚିତ୍ତ ଦେଇ ॥

ଗୁରୁ ସେବାରେ ସହିଁ ଦୃଢ଼ । ପିତା ମାତାରେ ସେବା ଗୂଢ଼ ॥
ଅତଏ ସେବା ମହୋତ୍ସବ । ଯେ ଶାସ୍ତ୍ର ପଥ ନ ଶୁଣିବ ॥
ସେହିତେ ଜନଙ୍କୁ ନ କହିବ । କହିଲେ ବିପତ୍ତି ପଡ଼ିବ ॥
ଗୁରୁବାରଙ୍କୁ ଗୁରୁବାର । ପୂଜା କରିବେ ସନ୍ଧ୍ୟାବେଳ ।
ପଢ଼ିବ ଘୃତ ଦୀପ ଜାଳି । ଦେବ ଅମୃତ ରସାବଳୀ ॥
ଅଶୁଦ୍ଧ ଘରେ ନ ରଖିବ । ମୂର୍ଖ କୁଶ୍ଚୁମ୍ଭେ ନ ଛୁଇଁବ ॥
ବାର ଗୋପାଳ ତୁମ୍ଭେ ଶୁଣ । ଏ ବଡ଼ ଗୁପତ ଗହନ ॥
ତୁମ୍ଭର ପୁତ୍ରମାନେ ପୁଣ । ଶୁଣିଲେ ହୋଇବେ କାରଣ ॥
ଆଦର ନାଥ ପୁତ୍ର ଯେତେ । ତହିଁବେ ଶୁଣିଲେ ଏ ଗ୍ରନ୍ଥେ ॥
ଖୋଲ କର୍ତ୍ତାଳ ଶିକ୍ଷା ଦାସ । ତୁମ୍ଭର ହେବେ ଯେତେ ଅଂଶ ॥
ସେମାନେ ଏକଥା ଶୁଣିଲେ । ଅନ୍ଧାର ଫିଟିଯିବ ଭଲେ ॥
ନିର୍ଗୁଣ ସଗୁଣାଦି ମତ । ଏଥିରେ ଅଛି ମନ୍ତ୍ର ତତ୍ତ୍ୱ ॥
ଏ ପାଠ ଯେ ବୁଝି ପାରିବ । ସେ ଜନ ଗୁରୁ ଅଙ୍ଗ ହେବ ॥
ଭିକ୍ଷା ମାଗିବା ବଡ଼ ସୁଖ । ଗୁରୁପଣ ଯେ ବଡ଼ ଦୁଃଖ ॥
ଭାଗ୍ୟରେ ଗୁରୁ ଅଙ୍ଗ ଧରେ । ଗୁରୁ ନିସ୍ତାରନ୍ତି ଯେ ନରେ ॥
ଗୁରୁ ନରକ ଉଦ୍ଧାରଣ । ଗୁରୁଟି ଶୁଭ କର୍ତ୍ତା ଜାଣ ॥
ଭାଗ୍ୟରେ ଥିବ ଯେ ଭଜନ । ଗୁରୁଙ୍କ ପୂଜା ଆଦ୍ୟସ୍ଥାନ ॥
ଅନେକ ଜନ୍ମେ ଭାଗ୍ୟ ଥିଲେ । ତତ୍ତ୍ୱ ଗୁରୁ ମିଳନ୍ତି ଭଲେ ॥
ଅତତ୍ତ୍ୱ ଗୁରୁ ଅଭାଗ୍ୟରେ । ମିଳନ୍ତି ଏକ ଏକ ନରେ ॥
ଯନ୍ତ୍ର ମନ୍ତ୍ର ତନ୍ତ୍ର ଯେ ଜାଣ । ଅଷ୍ଟ ପହରା ରସ ଗୁଣ ॥
ଗୁମ୍ଫା ଅବାଡ଼ ଜ୍ୟୋତି ସ୍ଥାନ । ଶମାଦି କରନ୍ତି ସାଧନ ॥
ଏହାଙ୍କୁ ତତ୍ତ୍ୱ ଗୁରୁ କହି । ତାହାଙ୍କୁ ପୁଚ୍ଛି ତତ୍ତ୍ୱ ପାଇ ॥
ତତ୍ତ୍ୱ ଜାଣିଣ ମୂର୍ଖ ଜଣ । ଶ୍ରୀ ଭାଗବତେ ଏ ପ୍ରମାଣ ॥
ଅତତ୍ତ୍ୱ ଗୁରୁ ଶିକ୍ଷା କଲେ । ଅଳପ ଜଳେ ମୀନ ଥିଲେ ॥
ଅଳପେ ସେହି ନାଶ ଯାଇ । ମନ ସଂଶୟ ନ ଫିଟଇ ॥
ସମୁଦ୍ର ଜଳେ ମୀନ ଥାଇ । ସେ ଯେହ୍ନେ ବଡ଼ ମତ୍ସ୍ୟ ହୋଇ ।
ଅତତ୍ତ୍ୱ ତତ୍ତ୍ୱ ଏହି ମତ । ସଂସାରେ ଗୁରୁ ହେ ବହୁତ ॥

ଶିଷ୍ୟ କରିବ ତତ୍ତ୍ୱ ଜାଣି । ପାଣି ଖାଇବ ଜାଣି ଗୁଣି ॥
ତୁମ୍ଭେ ଜାଣିଲ ତତ୍ତ୍ୱ ସାର । ସଂସାରେ ଗୁରୁପଣେ ଫେର ॥
ଖୋଳ କର୍ତ୍ତାଳେ କୃଷ୍ଣ କଥା । ଗାୟନ କରିବ ସର୍ବଥା ॥
ପ୍ରାତଃକାଳ ବା ସନ୍ଧ୍ୟାକାଳ । ପ୍ରଭାତେ ବସିବ ନିଶ୍ଚଳ ॥
ଅଷ୍ଟଅକ୍ଷର ମୂର୍ତ୍ତି ମନ୍ତ୍ର । ଜପ ଲକ୍ଷ୍ୟେ କର ତଦନ୍ତ ॥
ଏ ତତ୍ତ୍ୱ ଏକ ଏକ ଶିଷ୍ୟେ । ଦେଇ କରିବ ଉପଦେଶେ ॥
ମୁକୁନ୍ଦ ଅନନ୍ତ ଆନନ୍ଦ । ଯବନ ଉତ୍ଥାନ ଗୋବିନ୍ଦ ॥
ଯା ଗୃହେ ଏ ପାଠ ରଖିବ । ବିଷ୍ଣୁ ପ୍ରତିମା ପ୍ରାୟେ ଥିବ ॥
ଜୀବନ୍ତେ ସୁଫଳ ହୋଇବ । ମରଣେ ଗୋଲୋକେ ମିଶିବ ॥
ଧନ ସମ୍ପତ୍ତି ପୁତ୍ର ଭାଇ । ଦୁହିତା ଭାରିଯା ଜୁଆଇଁ ॥
ଏହାଙ୍କୁ ଦେଖି ଧନ ବଳି । ଗୁରୁ ବୈଷ୍ଣବ ନ ସେବଇ ॥
ଏ ପୁଣି କାଳେ ନାଶ ଯାଇ । ଧନ ଅର୍ଜିବା ବ୍ୟର୍ଥ ହୋଇ ॥
ଯେ ଧନ ଦୁଃଖେ ଅରଜିବ । ସେ ଧନ ବିଭାଗ କରିବ ॥
ଅଧେକ କୁଟୁମ୍ବ ପୋଷିବ । ଅଧେକ ବନ୍ଧୁ ବେଉସିବ ॥
ଆବର ଅଧେକ ଯେ ପୁଣ । ଦେବ ଯେ ଅତିଥି ବ୍ରାହ୍ମଣ ॥
ଆବର ଭାଗେକ ଯେ ଥିବ । ଗୁରୁ ବୈଷ୍ଣବେ ସମର୍ପିବ ॥
ତେବେ ସଂସାରୁ ପାର ହୋଇ । ପଦ୍ମରେ ପାଣି ନ ଲାଗଇ ॥
କାଇଞ୍ଚ ପଙ୍କେ ଯେହ୍ନେ ନାଶ । ଶୁଣ ବୈଶ ଗୋପ ଦାସ ॥
ଦାରା ଆବୋରି ଗୃହ କର । କେବା ବୈରାଗ୍ୟ ପଥ ଧର ॥
ବାରଟିଆ ଯେ ଦାସମାନ । ବୃନ୍ଦାବନରେ ତୁମ୍ଭ ସ୍ଥାନ ॥
ଗମି ପାରିବ ଯେତେ ଦୂର । ତୁମ୍ଭଙ୍କୁ ମିଳିବ ଆଧାର ॥
ଆବର କର୍ଣ୍ଣଦାସ ବାର । ପଢ଼ନ୍ତ ଗୋପାଳ ଓଙ୍କାର ॥
ଉଆ ଚାଉଳ ହାଣ୍ଡି ନୂଆ । ଭୋଜନେ କରିବ ଯୋରେହା ॥
ପୁରୁଣା ହାଣ୍ଡି ଅନ୍ନମାନ । କେବେହେଁ ନ କର ଭୋଜନ ॥
ତୁମ୍ଭର ବଂଶ ଉଜଳିବ । କେବେହେଁ ମଳିନ ନୋହିବ ॥
ଶୁଦ୍ଧ ଅନ୍ନ ଯେ ଶମ୍ଭୁ ଅନ୍ନ । ଶ୍ରାଦ୍ଧ ଅନ୍ନ ପତିତ ଜନ ॥
ଏତେକ ଅନ୍ନ ନ ଭକ୍ଷିବ । ଗୋପାଳ ମନ୍ତ୍ରେ ଭୋଗ ଦେବ ॥

ମତ୍ସ ମାଉଁସ ଛଡ଼ାଇବ । ଧୂମ ଗଞ୍ଜାରୁ ନବର୍ତ୍ତିବ ॥
ରାମଚନ୍ଦ୍ରର ବାର ଦାସ । ଏ ପଥ କଣବ ଅଭ୍ୟାସ ॥
ମୁକୁନ୍ଦ ଅନନ୍ତ ଦ୍ୱାଦଶ । ଏତ ପନ୍ଥତେ ନାହିଁ ଆସ ॥
ନବତନ ଯେ ନୂଆ ପାଗ । ନଜ ହସ୍ତରେ କରେ ଯୋଗ ॥
ଶ୍ରଦ୍ଧାରେ ଏହାକୁତ ଦେବ । ଦ୍ୱନ୍ଦ୍ୱ ଛନ୍ଦରେ ନ ମିଶିବ ॥
ଘୃତ କାଠରେ ହେବ ପୂଜା । ଯୋଗୀନ୍ଦ୍ର ଗଣେ ପ୍ରେ ତଥାକା ॥
ମୂଢ଼ ପନ୍ଥତ ଗୋପକୂଳ । କଳାରେ ମେଳେଛ ଏ ମେଳ ॥
ଉତ୍ତମ ଶୁଦ୍ଧ କାଠ ଏହି । ଆଗ୍ନରହାନେ ନାଶ ଯାଇ ॥
ପୁରାଣ ଗ୍ରନ୍ଥେ ପରମାଣ । ବଶ୍ୟ ଗଉଡ଼ ଅଟେ ଜାଣ ।
ଶ୍ରୀ ଭାଗବତେ ସନମତ । କୃଷ୍ଣ ଭୁଞ୍ଜିଲେ ଗୋପ ଭାତ ॥
କଳାରେ ମିଷ୍ଟ ପାକମାନ । ଶ୍ରୀ ନନ୍ଦନନ୍ଦରେ ଭୋଜନ ॥
ଏ କୁଳେ ଉତ୍ତମ ଆଧାର । ଆଗୁର କଣ ଭୋଗକର ॥
ରାମଚନ୍ଦ୍ର ଭରଥ ଶୁଣ । ଅଚ୍ୟୁତ ବଚନ ପ୍ରମାଣ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ଭୂଖାସ୍ଥଖଣ୍ଡେ
ଗ୯ ପଦ ମନ୍ତ୍ର ମୂର୍ତ୍ତି କଥନେ
ନାମ ଚତୁଃତ୍ରିଂଶ ପଟଳ ।

---

## ପଞ୍ଚତ୍ରିଂଶ ପଟଳ

ମୁକୁନ୍ଦ ଅନନ୍ତ କହୋଉଛନ୍ତି ଶ୍ରୀମୁଖରେ ।
ଯନ୍ତ୍ର ମଧ୍ୟେ ମନ୍ତ୍ର ମୂର୍ତ୍ତି କେଉଁ ପ୍ରକାରେ ॥
ଶିଷ୍ୟର ମନ କେମନ୍ତେ ହୋଇବାକ ବୋଧ ।
ଗୁରୁ କୃପା କଲେଣ ଫିଟିବ ମାୟା ଧନ୍ଦ ॥
ଶିଷ୍ୟ ଭକ୍ତ ଦେଖିଣ ଯେ କହିବା ତୋହରେ ।
ଯନ୍ତ୍ର ମଧ୍ୟେ ମନ୍ତ୍ର ଯେଉଁ ମୂର୍ତ୍ତି ପରକାରେ ॥
ଆଧାର ଲିଙ୍ଗ ଯେ ନାଭି ହୃଦ କଣ୍ଠ ପାଖ ।

ଅକାର ଉକାର ମକାର ଅର୍ଦ୍ଧ ବିନ୍ଦୁ ପଞ୍ଚ ।।
ପିଙ୍ଗି ରକ୍ତ ଘୃତକ୍ଷର ବସନ୍ତ ତଦ୍ଧରେ ।
ପର ରଜସ ଶବଦ ବେଢ଼ିଣ ପାଶରେ ।।
ଉକାର ଉପରେ ଗାର ଆକାରେ ମିଶିଣ ।
ସାର ବେନ ପାଶେ ହଉଁ ଛଉଁ ଯେ ବସିଣ ।।
ତଥିପରେ ମଣ୍ଡଳ ଗୋଟାଏ ବେଢ଼ିଅଛି ।
ପଞ୍ଚ କଳା ଯେନ ତହିଁ ଆକାର ରହିଛି ।।
ଅକାର ଆଦ୍ୟ ଅଟେ ଯେ ନଅ ବେନକଳା ।
ସନ୍ଥ ସାଧୁ ବଇଷ୍ଣବଜନଙ୍କର ଭେଲା ।।
ଅକାର ଉକାର ଯେ ଏକାର ଇକାରରେ ।
ଉକାର ବେଢ଼ିଣ ଅଛି ଅକାର ଶିରରେ ।।
ଶ୍ୱେତରଙ୍ଗ କୁଙ୍କୁମ ଶ୍ୟାମଳ କଳାମାନ ।
କୋଟି କୋଟି ସୂର୍ଯ୍ୟ ଚନ୍ଦ୍ର ଅଛି ସେହି ବର୍ଣ୍ଣ ।।
ନଅ ଆଦ୍ୟ କୃଷ୍ଣ ଅଟେ ନଅ ପ୍ରାନ୍ତ ରାଧା ।
ବେନ ଅଙ୍ଗ ଏକ ଅଟେ ହୃଦେ ହୃଦବନ୍ଧା ।।
ନଅର ପ୍ରାନ୍ତର କଳା କୃଷ୍ଣର ଚରଣ ।
ଆଉ ନଅ ଆଦ୍ୟ କଳା ରାଧା ପାଦ ଜାଣ ।।
ଆଦ୍ୟ ନଅ କଳା ପୁଣି କୃଷ୍ଣ ପାଦ ରହି ।
ପ୍ରାନ୍ତ ନଖେ କଳା ପୁଣ ରାଧା ପାଦ ହୋଇ ।।
ଏମନ୍ତ ହୋଇଣ ବେନ ପାଦ ଛନ୍ଦାଛନ୍ଦ ।
ଯେମାନେ ଭେଦ ଯେ ତତ୍ତ୍ୱ ଗୁରୁମାନେ ଭେଦ ।।
ନଅ ପରେ ହୃଦ ହୋଇ ଆଦ୍ୟ ନଅ କୃଷ୍ଣ ।
ପ୍ରାନ୍ତ ନଅ ରାଧା ହୃଦେ ଭେଦଣ ଏ ଚିହ୍ନ ।।
ନଅ ମଧ୍ୟେ କୃଷ୍ଣ ରାଧା ହୃଦ ବେନ ଶୋହେ ।
ନଅ ବେନ ପାଶେ ପୁଣି ଦୁଇ ଭୁଜ ରହେ ।।
ଏମନ୍ତେ ଯେ ଘୃତଲୁକ ରାଧା କୃଷ୍ଣ ଛନ୍ଦା ।
ହୃଦରେ ହୃଦୟ ବେନ ହୋଇଅଛି ବନ୍ଧା ।।

ନଅ ଆଦ୍ୟ କୃଷ୍ଣଙ୍କର ନଅ ପ୍ରାନ୍ତ ସନ୍ଧ ।
ମୁଖେ ମୁଖ ବନ୍ଧନ ଅଧରୁ ସୁଧା ବନ୍ଧ ॥
ନୟନ ଯେ କର୍ଣ୍ଣ ନାସା କଣ୍ଠ ହୃଦ ଶୋଭା ।
ଏମନ୍ତ ରୂପକୁ ଯୋଗୀଜନ ମନ ଲୋଭା ॥
ନଅର ପ୍ରାନ୍ତ ମଧ୍ୟରେ ଉକାରର କଳା ।
ତେଣୁ କରି ରାଧା ଅଙ୍ଗ ସୁବର୍ଣ୍ଣ ଉଜ୍ଜ୍ୱଳା ॥
ନଅର ଆଦ୍ୟ ଅଂଶ ଯେ ଉ ଙ୍କାର ଅଟଇ ।
ତେଣୁ କରି କୃଷ୍ଣ ଅଙ୍ଗ କଳାବର୍ଣ୍ଣ ହୋଇ ॥
କଳାକୁ ଗଉର ବର୍ଣ୍ଣ ଶୋଭା ପୁଣ ପାଏ ।
ଏଣୁ ଦିବ୍ୟ ରାଧା କୃଷ୍ଣ ଅଣାକ୍ଷରେ ରହେ ॥
ଅନାଦି ପୁରୁଷ ବୋଲି କେ ସାଧୁ ବୋଲନ୍ତି ।
ଅବ୍ୟକ୍ତ ଅଗ୍ରୁତ ବୋଲି କେହୁ ବୋଲୁଥାନ୍ତି ॥
ନଅ କଳାକୁ ଯେ କେହି ନିରାକାର ବୋଲି ।
କେହୁ ଭକ୍ତ ବୋଲନ୍ତି ଯେ ନନ୍ଦସୁତ ବୋଲି ॥
ଅକାର କଳା ଥିଲାକୁ ଆଦି ମୂଳ କନ୍ଦ ।
ଅନନ୍ତ ମୂରତି ବୋଲି କେ ପୁଣ ବୋଲଇ ॥
ନଅ କଳା ଥିଲାକୁ ସେ ନିର୍ଲେପ ବୋଲନ୍ତି ।
ମଳରେ ହି ସପ୍ତସ୍ୱର ଏକଅଂଶ ହୋନ୍ତି ॥
ବାଳ ଯେ ମୁକୁନ୍ଦ ନାମ ବାଳରେ ହି ଜାଣି ।
ଦର୍ଶିଯୋକ ହୃଦୟରେ ଥାନ୍ତି ତେଣୁ ପୁଣି ॥
କେ ପୁଣ ତାହାଙ୍କୁ ଜୀବ ପରମ ବୋଲନ୍ତି ।
ଜୀବ ରାଧାକୃଷ୍ଣ ଯେ ପରମ ବେନ ମୂର୍ତ୍ତି ॥
କେ ସଚ୍ଚିଦାନନ୍ଦ ଯେ ପୁଣ ତାହାଙ୍କୁ କହନ୍ତି ।
ନଅ ଆଦ୍ୟ ନଅ କଳା ଯେଣୁ ସେ ଅଟନ୍ତି ॥
କେହି ତାହାଙ୍କୁ ବୋଲନ୍ତି ଜଗନ୍ନାଥ ପୁଣ ।
କେ ପୁଣ ତାହାଙ୍କୁ ବୋଲି ଜାନକୀ ପରାଣ ॥

ନଅକଳା ଥିଲକୁ ସେ ନାରାୟଣ ବୋଲି ।
ନାମରୂପେ ପ୍ରକାଶିଣ ଘଟେ ଘଟେ ପୁରି ॥
ଉତ୍ତମ ମଧ୍ୟମ ସେ କନିଷ୍ଠ ରୂପ ତିନ ।
ତିନ ପରକାରେ ଥାନ୍ତି କେ ପାଇବେ ଚିହ୍ନି ॥
ଏ ରୂପ ଚହ୍ନାଇ ଯେହୁ ତାକୁ ବୋଲି ଗୁରୁ ।
ଶିଷ୍ୟକୁ ତାରନ୍ତି ପୁଣ ଏ ମାୟା ଧନ୍ଦାରୁ ॥
ମନ୍ତ୍ର ମୂର୍ତ୍ତି ଶିଷ୍ୟ ସେ ଏମନ୍ତ ନ ବୁଝିଲେ ।
ଶୋଳପର ଶିଷ୍ୟ ସେ ବୁଡ଼ଇ ଭବଜଳେ ॥
ଏମନ୍ତ ମୂରତି ଦେଖି ଶିଷ୍ୟ ଯେବେ ମରେ ।
ମଲେଣ ମିଳଇ ଯାଇ ଶ୍ରୀପଦ୍ମ-ପୟରେ ॥
ଇଚ୍ଛା ହେଲେ ଜନମ ସେ ଇଚ୍ଛାଏ ମରଣ ।
ଏ ରୂପକୁ ଲକ୍ଷ୍ୟ କରି ଥିବ ବାର ଜଣ ॥
ମୁକୁନ୍ଦ ଅନନ୍ତ ବଳ୍ପ ଯାଦବ ସୁଦାମ ।
ଅନନ୍ତ ବାଲ ଗୋପାଳ ମଧ୍ୟରେ ଉତ୍ତମ ॥
ପୁଣ ସେ ସଂଶୟ ଆମ୍ଭ ହେଉଛୁ ମନରେ ।
ମୁକୁନ୍ଦ ଅନନ୍ତକୁ ସେ ଦୟା କରିବାରେ ॥
ମୃତ୍ୟୁରୂପ ଆଜ୍ଞା ହେଲି ମନ୍ତ୍ର ଭେଦ କହ ।
ଅଣକ୍ଷର ମନ୍ତ୍ର ଭେଦ ଫିଟୁ ମାୟାମୋହ ॥
ଶୁଣ ହୋ ମୁକୁନ୍ଦ ଦାସ ଏ ବଡ଼ ଗୁପତ ।
କୋଟିକେ ଗୋଟିଏ ଅବା ଜାଣିପାରେ ଭକ୍ତ ॥
ଅ ଅ ବେନି ଅକ୍ଷର ସେ ପ୍ରାନ୍ତ ଅ ଅ ଧର ।
ଆ ଆ କ୍ଷର ଧରିବ ସେ ଆକାର ମାତ୍ରାର ॥
ଉକାର ଅକ୍ଷର ଧର ଇକାର ମାତ୍ରାରେ ।
ଅକାର ଅକ୍ଷର ଧର ଗାର ମାତ୍ରାଠାରେ ॥
ଇକାର ଅକ୍ଷର ପୁଣି ଛକାରେ ବସଇ ।
ମୁଁ ଅ ତଳେ ଗୃହେ ଅର୍ଦ୍ଧ ଉକାର ମାତ୍ରାହିଁ ॥

ଅକାର ଆଦ୍ୟରେ ପୁଣ ଅକାର ଧରିବେ ।
ସାତ ଅଙ୍କ ମାତ୍ରା ବାମ ପାର୍ଶ୍ୱେ ବସିବ ॥
ଉ ଡ ଯେ ଅକ୍ଷର ପୁଣ ଉକାର ମାତ୍ରାରେ ।
ଏମନ୍ତ ବୋଲିଣ ଅଣାକ୍ଷର ମନ୍ତ୍ରାକ୍ଷରେ ॥
ପଞ୍ଚାକ୍ଷର ମଧ୍ୟରେ ଯେ ଅକାର ପଶିବ ।
ଅଣାକ୍ଷର ମନ୍ତ୍ରକୁ ଯେ ଏମନ୍ତ ବାନ୍ଧିବ ॥
ସନ୍ଧି ନ.ମ ଉଚ୍ଚାରିବେ ତହିଁରେ ମିଶଇ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି ତହିଁ ॥
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ତିନିପୁର କଥା ।
ବାନ୍ଧ ଯେ ପାରିଲେ ତହିଁ ମିଳଇ ସର୍ବଥା ॥
ଯାହାକୁ ଭାବିଲେ ସେହୁ ଆସଇ ଯେ ପୁଣ ।
ଘଟେ ଘଟେ ପୂରିଅଛୁ ଶବଦ ରୂପେଣ ॥
ଏହୁ ମନ୍ତ୍ର ମୁଖ୍ୟ ଯେନ ନିଷ୍ଠଲେଣ ଥିବ ।
ବ୍ରହ୍ମାସ ଲୀଳା ଯେମନ୍ତ ସଂସାରୁ ତରିବ ॥
ପଞ୍ଚମେ ଗୋପାଳ ଆଉ ଗୋପକୁଳେ ବନ୍ଧ ।
ବୃଷସ୍ୱାଦି ଦ୍ୱନ୍ଦ୍ୱମାନ କେଣେ ହେବ ଧନ୍ଦ ॥
ଏଣୁକରି ତୁମ୍ଭେ ତ ବୃଷସ୍ଥ ଗ୍ରନ୍ଥି ଦେଲ ।
ତେଣୁକରି ତୁମ୍ଭେ ଯେ ପାଇଲ ମନ୍ତ୍ର ଭଲ ॥
ପ୍ରାତଃକାଳେ ସନ୍ଧ୍ୟାବେଳେ ପ୍ରଶାନ୍ତେ ବସିବ ।
କ୍ଷଣେ ଦଣ୍ଡେ ନିଷ୍ଠଲେ ଏ ରୂପ ଧ୍ୟାଉଥିବ ॥
ଶ୍ୱେତ ଯେ ଲୋହିତ ପୀତ ନୀଳବର୍ଣ୍ଣ ଜ୍ୟୋତି ।
ଶ୍ୟାମଳ ସୁନ୍ଦର ଗୁହ୍ୟ ପଞ୍ଚକଳା ସ୍ଥିତ ॥
ସି ଇ ଯେ ଇକାର କଳା ଧରି ଯେ ଆକାର ।
ଇ ଅ ଯେ ଉକାର କଳା ସ୍ତ୍ର ଉ ଯେ ଏକାର ॥
ଓକାର ଯେ ଆଦ୍ୟାକ୍ଷର ପଞ୍ଚମାତ୍ରା କହି ।
ପଞ୍ଚମ ଅକ୍ଷର ଦ୍ୱାର ମାତ୍ରା ଏ ହୁଅଇ ॥

ସି ଇ ଅଟେ ଶ୍ୟାମ ବେଦ ଧ୍ୱ ଇ ଯଜୁଃ ଜାଣି ।
ର ଅ ଅଟେ ଋକବେଦ ମ୍ଭ ଅଥର୍ବଣି ॥
ଅକାର ଯେ ଶିଶୁବେଦ ପାଞ୍ଚ ଏଣୁ ହୋଯ୍ୱେ ।
ଏ ପାଞ୍ଚ ବେଦରୁ ପୁଣ ଗ୍ରବାଣ କ୍ଷରଏ ॥
ରାମାୟଣ ଭାରତ ଯେ ଭାରତୁଁ ପୁରାଣ ।
ପୁରାଣୁ କ୍ଷରିଛି ପୁଣ ନାନା ଗ୍ରନ୍ଥମାନ ॥
କାବ୍ୟକୁ ସୁମୂର୍ତ୍ତିମାନ ତହୁଁ ଚଉତ୍ରିଶା ।
ଚଉତ୍ରିଶ ଅକ୍ଷରୁ ଯେ ପଦମାନ ମଣା ॥
ଏ ଯେତେ ଶବଦମାନ ତହୁଁ ଦୋନ୍ତ ସ୍ଥାନ ।
ଏ ଭେଦ ଜାଣନ୍ତି ଏକ ଏକ ସୂକ୍ଷ୍ମଜନ ॥
ଚଉଢଣା ଚଉପଦୀ ସୁମୂର୍ତ୍ତି ଶୋଳନ ।
ଖୋଳ କରତାଳେ ଘୋଷୁଥିବ ବାରଲୋକ ॥
ବ୍ରହ୍ମ କ୍ଷତ୍ରି ବୈଶ୍ୟ ଶୂଦ୍ର ଗୃହଜାତିମାନ ।
ଛତିଶ କୁଳ ଅଠର ପାଟକ ଯେ ଜନ ॥
ସବୁଙ୍କର ସ୍ଥାନେ ତୁମ୍ଭେ ମଙ୍ଗଳ କରିବ ।
ଗୋପାଳ କୁଳକୁ ତାର ଆପଣେ ତରିବ ॥
ଅଚ୍ୟୁତ ବଚନ ଘେନ ବାର ବଇଷ୍ଣବ ।
ଗୁରୁଭକ୍ତ ଗୀତା ଏହୁ ଶାସ୍ତ୍ରରେ ଦୁର୍ଲ୍ଲଭ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତତ୍ତ୍ୱଖଣ୍ଡେ ଯନ୍ତ୍ରମୂର୍ତ୍ତି ଅକ୍ଷର ମନ୍ତ୍ର-ମୂର୍ତ୍ତି କଥନେ ନାମ ପଞ୍ଚତ୍ରିଂଶ ପଟଳ ।

---

## ଷଟ୍‌ତ୍ରିଂଶ ପଟଳ

ଅନନ୍ତ ଗୋପର ତୁଷ୍ଟି ଘେନ ଗୁରୁଦେବ ।
ପ୍ରେମ ରାଧାକୃଷ୍ଣ ଯେବେ ମନ୍ତ୍ର ସ୍ଥାଳାଭାବ ॥
ଅନନ୍ତ ପଚାରେ ଯାହା ଶୁଣ ହେ ମୁକୁନ୍ଦ ।
ହରି କ୍ଷରି ଦୁଇକ୍ଷରେ ବେଦରୂପ ବନ୍ଧ ॥

ହ ଅ ଯେ ଅକ୍ଷର ପୁଣ ଆଦ୍ୟ ଯେ ଚରଣ ।
ହ ମଧ୍ୟେ ମାତ୍ରା ଅଟେ ଦ୍ୱେଜ ପାଦ ପୁଣ ॥
ହ ପରେ ସାତ ଅଙ୍କ ହୃଦ ଯେ ଅଟଇ ।
ସାତ ଅଙ୍କପରେ ବନ୍ଦୁ ଶିର ବୋଲି କହ୍ନ ॥
କ୍ଷ ଯେ ଅକ୍ଷର ଅଟେ ରାଧାଙ୍କ ଚରଣ ।
ଆବର ପାଦ ଅଟଇ କ୍ଷ ର ଆଦ୍ୟ ଜାଣ ॥
ଇକାର ମାତ୍ରାକୁ ପୁଣ ହୃଦ ବୋଲି କହ ।
ଇକାର ଅକାର ପରେ ଶିର ବନ୍ଦୁ ରହ ॥
କ୍ଷ ମାତ୍ରା ଗାରେ ମିଶି ହ ମଧ୍ୟେ ମିଶେ ।
ଏମନ୍ତେଣ ଦୁଇଭୁଜ ଦୁଇ ଅଙ୍ଗଦେଶେ ॥
ଭୁଜେ ଭୁଜ ଛନ୍ଦାଛନ୍ଦ ପ୍ରେମଭାବେ ରସ ।
ପ୍ରେମ ରାଧା ପ୍ରେମ କୃଷ୍ଣ ଏ ଭାବରେ ଦୃଶ୍ୟ ॥
ମୁକୁନ୍ଦ ପୁଣି ଜଣାଉଅଛୁ ପାଦତଳେ ।
ଏ ରୂପର ମନ୍ତ୍ର ପୁଣ କହିବା ପୁଢ଼ଲେ ॥
ହେତୁ ମନେ ବନ୍ଧ ଧର ମନ୍ତ୍ରର ବସ୍ତୁର ।
ବାରଟିଆ ଦାସମାନେ ମନେ ଦୃଢ଼ କର ॥
ହ କାର ଅକ୍ଷରେ ପୁଣ ବସିବ ପ କାର ।
ତଥିପାଶେ ଏକାରକୁ ତାର ପରେ ଧର ॥
ଆବର ମାତ୍ରାକୁ ତଥି ପାଶରେ ଥୋଇବ ।
ଆବର ଯେ ହ ମାତ୍ରା ତଳରେ ରଖିବ ॥
ପଢ଼ିଲେ ଏମନ୍ତ୍ର ପୁଣ ଏକାକ୍ଷର ହୋଇବ ।
ପାଞ୍ଚଗୋଟି ମାତ୍ରା ବସି ପଞ୍ଚାକ୍ଷର କହେ ॥
ଏହ ମନ୍ତ୍ର ସୁମତେ ସ୍ୱରୂପ ଜ୍ଞାନ କର ।
ସର୍ବ ମନ୍ତ୍ର ପରେ ସାର ଅଟେ ଏ ଅକ୍ଷର ॥
ସବୁ ଯେ ଶବ୍ଦ ମିଳେ ହୃଦରେ ଭଜଲେ ।
ଗୀତା ଭାଗବତେ ଏହ ମନ୍ତ୍ର ସାର କଲେ ॥

କେ ପୁଣ ତାହାଙ୍କୁ ବୋଲେ ହରି ଏ ଅଟନ୍ତି ।
କେ ପୁଣ ଭଗତ ବୋଲେ ହୃଦପଦ୍ମ ମୂର୍ତ୍ତି ॥
କେ ପୁଣ ତାହାଙ୍କୁ ଚିନ୍ତି ଦୁର୍ଗତି ହରନ୍ତି ।
ଏଣୁକରି ହରି ନାମ ସର୍ବ ସେ ସମ୍ପତ୍ତି ॥
ହରିନାମ ଧରିଥିଲେ ହୋଇବ ସମ୍ପଦ ।
ହରି ଆଶ୍ରେ ଜନକୁ କଳ୍ପିତ ଇନ୍ଦ୍ର ପଦ ॥
ହରିନାମ ଅଶ୍ରେ କରି ଭୁଷଣ୍ଡି ଅମର ।
ହରିନାମ ଧରି ବିଭୀଷଣ ଯୁଗାନ୍ତର ॥
ହରିନାମ ଧରି ହନୁ ଲଙ୍କା ଜୟ କଲା ।
ସେହୁ ଭକ୍ତେ ହରିନାମ ଭଜୁଁ ସେ ତରିଲା ॥
ସହାସ ଚରିତ ଲୀଳା ହରିର ସଙ୍ଗୀତ ।
ତୁମ୍ଭେ ଯେ ବଣିଜ କରି ତରିବ ଜଗତ ॥
ତୁମ୍ଭେ ମୂଳବୃକ୍ଷ ହୁଅ ପୁଣି ନାଭି ଜଳ ।
ତୁମ୍ଭଲାଗି ଉଦ୍ଧାର ହୋଇବେ ଗୋପକୁଳ ॥
ସାନ ଅଚ୍ୟୁତର କଥା ମନେ ହେତୁକର ।
ଦ୍ୱାଦଶ ଗୋପାଳ ତୁମ୍ଭେ ଗୋପକୁଳେ ସାର ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା ତୃତୀୟଖଣ୍ଡେ ଏକାକ୍ଷର
ମନ୍ତ୍ରମୂର୍ତ୍ତିକଥନେ ନାମ ଷଟ୍‌ତ୍ରିଂଶ ପଟଳ ।

---

# ସପ୍ତବିଂଶ ପଟଳ

ମୁକୁନ୍ଦ ଦାସର ମନ ସଂଶୟ ଫେଡ଼ିବା ।
ଶ୍ରୀରାମ ମୂରତି ରୂପ ତନ୍ତ୍ରରେ ବନ୍ଧିବା ।୧।
ଭଲ ସନ୍ଧି ପଚାର ହେ ମୁକୁନ୍ଦ ଅନନ୍ତ ।
ନୋହିଲେ କି ଗୋପ୍ୟରେ ତୁମ୍ଭେ ଭଗବନ୍ତ ।।
କହିବା ଯନ୍ତ୍ରର ମୂର୍ତ୍ତି ଏକ ମନେ ଘେନ ।
ତୁମ୍ଭେ ବାରଜଣ ଅଟ ରାହାସେ ପ୍ରଧାନ ।।
ଆନବେଳେ ଏ କଥା କି ପଚାରି ହୁଅଇ ।
ଆନକୁ ରାହାସ ଲୀଳା ମିଳିବ ବା କାହିଁ ।।
ହୃଦି ଷଷ୍ଠି ତଳରେ ଏ ଅର୍ଦ୍ଧମାତ୍ରା ବସେ ।
ଅର୍ଦ୍ଧମାତ୍ରା ମଧ୍ୟେ ଏକ ଗାର ପରକାଶେ ।।
ଅର୍ଦ୍ଧେ ଅର୍ଦ୍ଧେ ବେନଗାର ଅର୍ଦ୍ଧମାତ୍ରା କହୁ ।
ଅର୍ଦ୍ଧେ ରାମ ମୂର୍ତ୍ତି ଯେ ଅର୍ଦ୍ଧେ ସୀତା ହୋଇ ।।
ନ ର ଯେ ଆଦ୍ୟ କଳା ବାମରେ ବସିବ ।
ଗାରଠାରୁ କେତେ ଷର ଗୁଡ଼ିକରି ଦେବ ।।
ପ ଅର ଯେ ଆଦ୍ୟ କଳା ବାମରେ ବସିବ ।
ଏ ମନ୍ତ୍ରେଣ ଶହେ ବୃଶ ଅକ୍ଷର ହୋଇବ ।।
ତାରକ ମନ୍ତ୍ର ଏ ଏଥି ବନ୍ଧିଲେଟି ପାଇ ।
ସଦ୍‌ଗୁରୁ ସେବିଲେ ଯେ ସୁଶିଷ୍ୟ ଜାଣଇ ।।
କୁବୁଦ୍ଧି ସେବକମାନେ ନ ପୁଚ୍ଛନ୍ତି ଏହା ।
ଗୁରୁଙ୍କୁ ନ ପୁଚ୍ଛି ହୋନ୍ତି କୁଟୁମ୍ବେ ଷ୍ଟୁରୁହା ।୧୦।
କୁଟୁମ୍ବ ମେଳେହେଁ ଶିଷ୍ୟ ଏ ଭେଦ ନ ପାଏ ।
ଗୁରୁ ସେବା କଲି ଶିଷ୍ୟ ଏହୁ ମନ୍ତ୍ର ଧ୍ୟାୟେ ।।

---

୧-୨— ଯନ୍ତ୍ରରେ (ଖ, ଗ)

ଆବର କଥାଏ ଶୁଣ ମୁକୁନ୍ଦ ଅନନ୍ତ
ସବୁ ଗୁରୁ କହି ନ ପାରନ୍ତି ଏହି ତନ୍ତ୍ର ॥
ଜାତସ୍ମର ଗୁରୁମାନେ ଏ ଭେଦ ଜାଣନ୍ତି ।
ମାନବ ଜନମ ଗୁରୁ ଏ ଭେଦ ନ ପାନ୍ତି ॥
ଏ ଯେ ଯନ୍ତ୍ର ମୂର୍ତ୍ତି ଶୁଣ ଅନନ୍ତ ମୁକୁନ୍ଦ ।
ଯନ୍ତ୍ର ମୂର୍ତ୍ତି କହିବା ହେ ମନେ ଘେନ ବନ୍ଧ ॥
ନଅ କଳା ଅଟଇ ଯେ ବେଦ ଯେ ଚରଣ ।
ତଥିପରେ ହୃଦ ଶିର ମୁଖ ଭୁଜ ପୁଣ ॥
ଯ ଆଦ୍ୟ କଳା ଅଟେ ହୃଦସ୍ଥିତି ଜାଣ ।
ଯ ତଳେ ବର୍ତ୍ତି ଏ ବେଦ ଚରଣ ॥
ତଥିପରେ ହୃଦ ଶିର ନୟନ ନାସିକା ।
ଏଣୁକରି ଯ କଳା ସୀତୟାର ସକା ॥
ନଅ କଳା ରାମ ମୂର୍ତ୍ତି ନାରାୟଣ କହି ।
କେ ପୁଣ ତାହାଙ୍କୁ ନରହରି ଯେ ବୋଲଇ ॥
ଅମନ୍ତ ମୂରତ ରୂପ ଧରିଣ ପ୍ରକାଶ ।
ଥାନେ ଥାନେ ଲୀଳା ତାଙ୍କ ଅଟେ ପ୍ରେମରୂପ ॥
ନଅକଳା ଅଟଇ ଯେ ଆ ଯେ ଅକ୍ଷର ।
ଆତ୍ମା ବୋଲି ଅକ୍ଷର ଯେ ନଅରୁ ସଞ୍ଚାର । ୨୦ ।
ରା ଯେ ଅକ୍ଷର ପୁଣ ସବୁ କ୍ଷରଇ ।
ମ ଯେ ଅକ୍ଷର ପୁଣ ନଅ କଳା ହୋଇ ॥

---

୨୦—କ୍ଷ

ମୁକୁନ୍ଦ ଧରମୁ ପୁଣ ପଚ୍ଛରୁ କଥାଏ ।
ଏ ରୂପର ମନ୍ତ୍ର ପୁଣ କେମନ୍ତେଣ ହୋଏ ॥
ମନ୍ତ୍ର ଭେଦ ଶୁଣ ତୁମ୍ଭେ ହେରୁ କରି ମନ ।
ଅନନ୍ତ ଦାସ ହେ ଶୁଣ ମୁକୁନ୍ଦ ସୁଜନ ॥

ଏଣୁକରି ପରମ ଆତ୍ମା ଯେ ତାକୁ କହି ।
ତତ୍ତ୍ୱ ନିରଞ୍ଜନ ବୋଲି କେ ପୁଣ ଗୁଣଇ ॥
କେ ବୋଲଇ ଜ୍ୟୋତି ବ୍ରହ୍ମ ଅଟନ୍ତି ଏ ପୁଣ ।
କେ ବୋଲି ଅଜ୍ୟୋତି ରୂପ ଅଟନ୍ତି ଏ ଜାଣ ॥
କେ ବୋଲନ୍ତି ଗତି ବ୍ରହ୍ମ ଗୁଣିଲେ ମୁକତି ।
କେ ବୋଲଇ କାଶୀ କ୍ଷେତ୍ର ବାରଣସୀ ସ୍ଥିତି ॥
ଏମନ୍ତ ମୂରତି ରୂପ ହୃଦେ ସୁମରିବ ।
ସୁସେବକମାନଙ୍କୁ ଯେ ଏ ଭେଦ କହିବ ॥
ଅପଣ୍ୟ ଶିଷ୍ୟ ଏ ଭେଦ ନ ପଚ୍ଚରେ ପୁଣି ।
କୁଟୁମ୍ବ ଧନ ପଣରେ ଭ୍ରମଇ ନ ଜାଣି ॥
ଧନ ପ୍ରାଣ କୁଟୁମ୍ବ ଛାଡ଼ିଲ ତୁମ୍ଭେ ବୀର ।
ସବୁ ଧନ ପଣ କଲ ଶ୍ରୀଗୁରୁ ପସ୍ତର ॥
ଏଣୁକରି ମନ୍ତ୍ରମୂର୍ତ୍ତି ପାଇଲ ଦର୍ଶନ ।
ଏହି ଗ୍ରନ୍ଥ ଭକତମାନଙ୍କୁ ଚକ୍ଷୁ ଦାନ ॥
ଜ୍ଞାନ ଅଭ୍ୟନ୍ତରର କଥା ମନେ ଘେନିଥିବ ।
ଗୁରୁଭକ୍ତି ଗୀତା ତୁମ୍ଭେ ନିରତେ ପଢ଼ିବ ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା କୃଷ୍ଣାସ୍ୱଖଣ୍ଡେ ତାରକ-
ମନ୍ତ୍ର-ମୂର୍ତ୍ତି ଦର୍ଶନେ ନାମ ସପ୍ତତ୍ରିଂଶ ପଟଳ ॥

---

## ଅଷ୍ଟତ୍ରିଂଶ ପଟଳ

ମୁକୁନ୍ଦ ଅନନ୍ତ ବସ୍ତ୍ର ସୁଦାମ ଗୋବିନ୍ଦ ।
ପବନ ଉତ୍ଥାନ ବୃନ୍ଦାବନ ଯେ ଆନନ୍ଦ ॥
ବାଳକ ମଧୁର ସାହା ଅଛି ଯେ ପଶୁର ।
କହିବା ଏଥିର କଥା ପାରି ଯେବେ ଧରି ॥

ହଉଁ କ୍ଷଉଁ ମଧ୍ୟରେ ଯେଉଁ ଗାର ଅଛଇ ।
ଅର୍ଦ୍ଧମାତ୍ରା ମଧ୍ୟେ ରହେ ଓଁକାର ଯେ ତହିଁ ॥
ଗାର ପାଶେ ହ କ୍ଷର ବସାଇବ ପୁଣ ।
ଦ ଯେ ବସିଲେ ହେବ କକାରଟି ଜାଣ ॥
ଗାର ଏକପାଦ ହୁଏ ବନ୍ଧଣ ପାଇଲେ ।
ଦ ଗାର ଆର ପାଦ ଚରଣ ବନ୍ଧଲେ ॥
ଆଉର ଯେ ଇକାର ହୃଦସ୍ଥ ପୁଣ ହୋଇ ।
ନାଦବିନ୍ଦୁ ଶିର ବୋଲି ଗୁରୁ ଦୀକ୍ଷା କହି ॥
ଧ ଇକାର ଅଟଇ ଭୁଜ ଲକାରଟି କାଟି ।
ଏ ରୂପକୁ ରସିକ ଭକତ ଆତ୍ମା ଖଟି ॥
ଏଣୁ ସେ କ୍ଳୀଁ ଅକ୍ଷର କାମ ବୀଜ କହି ।
ଗାରରୁ ପଞ୍ଚରେ ପୁଣି ଏତେ କଳା ତହିଁ ॥
ଶୁଦ୍ଧ ରାଧା ଶୁଦ୍ଧ କୃଷ୍ଣ ଅଟନ୍ତି ଏ ପୁଣ ।
ଷୋଳ ସସ୍ର ଗୋପୀ ଏହି ଅଙ୍ଗୁ ଜାତ ଜାଣ ॥
ଆଉର ଷୋଳ ସହସ୍ର ଗୋପାଳ ଜନମ ।
ଷୋହଳ ସସ୍ର ଅନନ୍ତ ଗୋପଗୋପୀ ଜାଣ । ୧୦ ।

କଳଉଁ ଅକ୍ଷର ପୁଣ ଏମନ୍ତ ସେ ଧର ।
ଲକାର ଯେ ରାଧା ବୋଲି ସୁମରଣା କର ॥
ଇକାର ନାମ ଧଇଲେ ପଞ୍ଚାକ୍ଷର ହୁଏ ।
ଶ୍ୟାମ ପଞ୍ଚାକ୍ଷର ସଦଗୁରୁ ଶିଷ୍ୟ କହେ ॥
ଏହି ରୂପ ଧ୍ୟାନ କରି ରାହାସେ ମିଶିବ ।
ଜନ୍ମେ ଜନ୍ମେ ପାଦପଦ୍ମେ ସେବା କରିଥିବ ॥

ଯୁଗ ଶେଷେ ପ୍ରଳେ ହେଲେ ପାଦେ ନମସ୍କରିବ ।
ଅବତାର ରୂପ ଯେଉଁ ଲୀଳା କରୁଥିବ ॥
ସତ୍ୟ ଯୁଗେ ଋଷି ସଙ୍ଗେ ପୁରାଣ ପଠନ ।
ତ୍ରେତୟା ଯୁଗରେ କଲ ଯଜ୍ଞ ବର୍ଦ୍ଧମାନ ॥

ଦ୍ୱାପର ଯୁଗରେ କଲ ରାହାସ ବନ୍ଦନ ।
କଳିଯୁଗେ ସଂକୀର୍ତ୍ତିନେ ରାହାସ କୀର୍ତ୍ତନ ॥
ପୁଣ ସେ ସତ୍ୟ କଳିରେ ରାଗ ବନ୍ଧଗୀତ ।
ବିବିଧ ଯନ୍ତ୍ର ମିଶିଣ ରାଜବିଧି ମତ ॥
ଅବତାର ମୂର୍ତ୍ତି ସଙ୍ଗେ ଯୁଗେ ଯୁଗେ ଖେଳା ।
ଏଣୁକରି ରାହାସ ଲୀଳାକୁ କର ଭେଳା ॥
ସତ୍ୟଯୁଗେ ଭଗବାନ ତ୍ରେତାଯୁଗେ ରାମ ।
ଦ୍ୱାପରେ ଜନମ ହେଲେ କୃଷ୍ଣ ବଳରାମ ॥
ଶ୍ରୀଚୈତନ୍ୟ ନିତ୍ୟାନନ୍ଦ କଳିଯୁଗେ ସାର ।
ଜଗନ୍ନାଥ ରୂପ ଧାଇ ରାସଲୀଳା କର ।୨୦।
ପୁଣ ଯେ କଲଙ୍କି ସଙ୍ଗେ କରିବେ ଗାୟନ ।
ଛତିଶ ରାଗେଣ ଛଅ ରାଗ ଗୀତମାନ ॥
ଖୋଲ କରତାଳ ବୀଣା ସାରଙ୍ଗ ଅମୃତ ।
ତାଳ ଯେ ମୃଦଙ୍ଗ ତମ୍ଫ ସଞ୍ଚରି ସଙ୍ଗୀତ ॥
ସଂଶୟ ରହିଲ ଗୁରୁ ରାଧାରୂପେ ପୁଣ ।
ଲକାର କେମନ୍ତେ ବସେ କ୍ଳୀଁ ଠାରେ ପୁଣ ॥
ଅଶ୍ରୁ ଛଳଛଳ ହୋଇ କୋଳାଗତ କରି ।
କହିମସନ୍ଧି ପଚାରୁ ମୁକୁନ୍ଦ ମୁରାରି ॥
କହିବା ଅନନ୍ତ ଶୁଣ ଲକାର ବିଚାର ।
କରପ୍ରାନ୍ତେ ବସିବ ଲକାର ମଧ୍ୟର ।୨୫।
ଲକାର ଆଦ୍ୟ କଳା ଯେ କଅପ୍ରାନ୍ତେ ବସେ ।
ରାଧାକୃଷ୍ଣ ପ୍ରେମଲୀଳା ଏହିରୂପେ ମିଶେ ।୨୮।

---

୨୭-ଖ – ରହିଲେ ଚତୁର୍ଦ୍ଧା ରୂପଗୋଟି ଶୋଭା ଦଶେ ।
ଲକାର ପ୍ରାନ୍ତର କଳା ଗାର ଆର ପାଶେ ॥
ଲକାର ତଳକୁ ପୁଣ ପାଦ ବେନି ହୋଏ ।
ଲକାର ଉପରେ ପୁଣ ଶିରବିନ୍ଦୁ ଶୋଭେ ॥

ଅଚ୍ୟୁତ ବଚନ ଏ ଯେ ଅଟେ ନଉଧାର ।
ବନ୍ଧିଲେ ଏ ଭବାର୍ଣ୍ଣବ ସିନ୍ଧୁ ହେବ ପାର ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ
ରାଧାରୂପ ବର୍ଣ୍ଣନ ମନ୍ତ୍ରଭେଦକଥନେ
ନାମ ଅଷ୍ଟତ୍ରିଂଶ ପଟଳ ।

---

## ଊନଚତ୍ୱାରିଂଶ ପଟଳ

ଶ୍ରୀଗୁରୁ ପରମ ଯେ ଗୁରୁ । କରୁଣା କର ମହାମେରୁ ॥
କେଉଁ ଗୋପାଳ କେଉଁ ନାମ । ଭକତ ମନରେ ଉତ୍ତମ ॥
ତବଣ ଗୋପାଳ ହେ ଶୁଣ । ରାମ ମୁକୁନ୍ଦ ହୃଦେ ଗୁଣ ॥
ଭରତ ଅନନ୍ତ ହେ ବନ୍ଦ । ବିଷ୍ଣୁ ଧରମୁ ହେ ବିବେକ ॥
ଅଠର ଅକ୍ଷର ଯେ ନାମ । ଗୋପାଳ ମନ୍ତ୍ର ଏ ଉତ୍ତମ ॥

---

ଏମନ୍ତ୍ରେଣ ଦୃଢରୂପ ଧ୍ୟାନ କରୁଥିବ ।
ଉତ୍ତମ ଶିଷ୍ୟଙ୍କୁ ଏହା ଗୁପତେ କହିବ ॥
ଲକାର ପ୍ରାନ୍ତ କଳାରେ ରାଧା ବେଦାକ୍ଷର ।
ଏହି ମନ୍ତ୍ର ମୂର୍ତ୍ତି ଧର ବାର ହେ ଗୋପାଳ ॥
ଅଚ୍ୟୁତ ବଚନ ଧର ବାର ପାଞ୍ଚଦାସ ।
ତବଣ ଗୋପାଳ ଘୋଷ ଗୁରୁଭକ୍ତ ରସ ॥

୧୭-ଗ—ନିର୍ଗୁଣ ମନ୍ତ୍ର ଯେ ବାରୁ ନ କହିବ ଆନେ ।
କହିଲେ ଶାପ ପାଇବ ଅନ୍ନବସ୍ତ୍ର ହାନେ ॥

ଅଚ୍ୟୁତ ବଚନ ବାର ଜଣ ପାଳଥିବ ।
ଅମାନନା କଲେ ଭ୍ରଷ୍ଟ ନଷ୍ଟେ ନାଶଯିବ ॥

ଏକ ଅକ୍ଷରେ ଏକରୂପ । ମନ୍ତ୍ରରେ ହୋଇଅଛୁ ଗୋପ୍ୟ ॥
ଓଁ କାର ଅକ୍ଷର ଯେ ମୂଳ । ରାଧା କୃଷ୍ଣଙ୍କ ତହିଁ ଅଳ ॥
ଓଁ କାର କୃଷ୍ଣରୂପ ହୋଇ । ଅର୍ଦ୍ଧମାତ୍ରା ଯେ ରାଧା ଦେହି ॥
ଓମଧ ଆଦ ବଳଦେବ । ରେବତୀ ତହୁଁ ଅର୍ଦ୍ଧ ହେବ ॥
ଏମନ୍ତେ ସ୍ଵରୂପ ଜାଣ । ତହୁଁ ଜନମ ଗୋପଗଣ ॥
କ୍ଲୀଁ ଅକ୍ଷର କୃଷ୍ଣ କହି । କ୍ଷୀଅ ଯେ ସୁଦାମ ଅଟଇ ॥
ସ୍ଵ ଅକ୍ଷର ଦାମ ଜାଣ । ଗୋ ଯେ ଦାମ ଶ୍ରୀଦା ପୁଣ ॥
ବ କାର ଶ୍ରୀବତ୍ସଟି କହି । ଦାଆଁ ପାତ୍ରିକ ପୁଣ ହୋଇ ॥
ସ୍ଵ ଅକ୍ରୁର ବୋଲି ଜାଣ । ଗୋ ଉଦ୍ଧବ ଯେ ପ୍ରମାଣ ॥
ପୀ କାର ବନ୍ଧୁର ଟି କହି । ଜ ଯେ ସଂଜୟ ଅଟଇ ॥
ନଅ ଯାଦବ ବୋଲି ଜାଣ । ବ ବସୁନନ୍ଦ ବୋଲ୍ଣ ॥
ଲ କୁ ବୃନ୍ଦନନ୍ଦ କହି । କୃଷ୍ଣର ବାର ଶାଖା ଏହି ॥
ବଳଭଦ୍ର ଯେ ଗୁରୁକ୍ଷର । ସୁବଳ ସ୍ଵ ଯେ ଅକ୍ଷର ॥
ସୁରଥ ସ୍ଵ ଅକ୍ଷର ହୋଇ । ନ ନାମ ଲୋକପାଳ ବହି ॥
ମ ଯେ ଧର୍ମନନ୍ଦ ପୁଣ । ରାମ ଶାଖା ଏ ଚାରିଜଣ ॥
ଏମନ୍ତେ ଅଟେ ଷୋଳଜଣ । ଗୋପାଳ ଅକ୍ଷର ପ୍ରମାଣ ॥
ରାମ କୃଷ୍ଣ ମିଶି ଅଠର । ଏ ଶାଖା-ଗଣ ଚବିଶର ॥
ଏକ ଶାଖାକେ ଷୋଳ ସହ । ଯୂଥ ମିଳଣ ହୋନ୍ତି ମିଶ୍ର ॥
ତୁମ୍ଭେ ଚବିଶ ଗୋପଜନ । ଏହି ମନ୍ତ୍ରକୁ କର ଧ୍ୟାନ ॥
ସ୍ଵ କୁ ମୁକୁନ୍ଦ ହେ ଧର । ଗୋ କୁ ଅନନ୍ତ ସୁମର ॥
ବି କ ରାମଚନ୍ଦ୍ର ଧର । ଦା କୁ ଭରଥ ସୁମର ॥
ସ୍ଵ କୁ ଚକ୍ରଧର ମନ । ଧରମ ଗୋ ଅକ୍ଷରେ ଧ୍ୟାନ ॥
ପୀ କାର ବଶିଷ୍ଠ ହେତୁ କର । ଜ କୁ ଦକ୍ଷିଣ ସୁମର ॥
ନ କୁ ମଥୁରା ହେ ଧର । ଜ କୁ ପବନ ସୁମର ॥
ଜ କୁ ଉତ୍ଥାନ ଗୁଣିବ । ଗୋପାଳ ମନ୍ତ୍ର ସୁମରିବ ॥
ଲ୍ଲ ଯେ ଆନନ୍ଦ ଭଜନ । ସ୍ଵ ଗୋବିନ୍ଦ କରେ ଧ୍ୟାନ ॥

ନ କୁ ବସ୍ତ୍ର ସୁମରବ । ମ କୁ ବାଳକ ଧରବ ॥
ଯେମନ୍ତେ ଷୋଳ ଯେ ଅକ୍ଷର । ପଞ୍ଚ ଶାଖା ଯେ ମନେ ଧର ॥
ବାରଷ୍ଟିଆ ଯେ ଦାସମାନେ । ଏ ରସ ଧର ଗୁଣ ମନେ ॥
ମନ୍ତ୍ରକୁ ରସ ଗୁଣ କହ୍ନ । ରସକୁ ପ୍ରାଣୀ ରସି ରହ୍ନ ॥
ସଗୁଣେ ସର୍ବ ମନ ପଶେ । ନିର୍ଗୁଣେ ଏକ ଏକ ରସେ ॥
ସହସ୍ର ଜଣେ ଏକ ଜଣ । ନିର୍ଗୁଣେ ପଶିପାରେ ପୁଣ ॥
ସଗୁଣ ନିର୍ଗୁଣ ଏ ଦେହ୍ନ । ଯେ ସାଧିପାରେ ମନ ଦେଇ ॥
ସଗୁଣ ନିର୍ଗୁଣ ନ ଜାଣେ । ଭ୍ରମନ୍ତ ଶାସ୍ତ୍ରର ଶ୍ରବଣେ ॥
ଏ ରସ ଗୁଣକୁ ତୁ ଶିଖ । ଗ୍ରହାସ ଗୁଣିବା ଗଠକ ॥
ସଗୁଣ ସଂସାରେ କହ୍ନବ । ନିର୍ଗୁଣ ଗୁପତେ ଭଜବ ॥
କୋଟିକେ ଗୋଟିଏ ଶିଷ୍ୟରେ । କହ୍ନବ ମନ ସେବାଦ୍ୱାରେ ॥
ମୁକୁନ୍ଦ ଅନନ୍ତ ମଥୁରେ । ଅଚ୍ୟୁତ ଆଜ୍ଞା ଥିବ ଧର ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ
ଗୋପାଳ ମନ୍ତ୍ର ଶାଖାଗଣ ଧ୍ୟାନ ସ୍ମରଣେ
ନାମ ଊନଚତ୍ୱାରିଂଶ ପଟଳ ।



## ଚତ୍ୱାରିଂଶ ପଟଳ

ଆଜ୍ଞା ଯେ ଦେବ ଗୁରୁଦେବ । ସଖୀ ଜନମ କେଉଁ ଭାବ ॥
ଶୁଣ ଅନନ୍ତ ହେ ମୁକୁନ୍ଦ । କହ୍ନବା ଗୋପୀଙ୍କ ବିନୋଦ ॥
କୃଷ୍ଣଙ୍କ ସଙ୍ଗେ ରାଧା ଭାବ । ବିନୋଦ ଲୀଳା ସୁଖ ଭୋଗ ॥
ଦାମ ଶ୍ରାମତୀ ସଙ୍ଗେ ଲୀଳା । ଗୋପ ନଗରେ କରେ ଖେଳା ॥
ସୁଦାମ ସଖା ସଙ୍ଗେ ପୁଣ । ସୁରେଖା ସାଙ୍ଗରେ ମିଳଣ ॥
ଦାମ ସଖାର ଶୁଣ ରସ । ହରି-ପ୍ରିୟାର ଖେଳ ରସ ॥
ସୁଗନ୍ଧା ସଖୀ ସଙ୍ଗେ ମିଳ । ଶ୍ରୀବସ୍ତ୍ର କରେ ରସ କେଳି ॥
ବନ ଯେ ତରଙ୍ଗିଣୀ ମଙ୍ଗ । ସାତ୍ତ୍ୱିକା କରେ ଖେଳ ରଙ୍ଗ ॥
ମଧୁବନ୍ତି ସଙ୍ଗତେ ମିଳ । ଅକ୍ରୁର କରେ ରସ କେଳି ॥

ପ୍ରିୟା ସଙ୍ଗରେ ରସ ଭାବ । ସେ ସଙ୍ଗେ ଖେଳଇ ଉଦ୍ଧବ ॥
ସୁପ୍ରିୟା ସଙ୍ଗେ ରସମାନ । ତା ସଙ୍ଗେ ବନ୍ଧୁର ମିଳନ ॥
ସୁରେଖା ସଙ୍ଗେଣ ସନ୍ତୁଷ୍ଟେ । ବିନୋଦ ରସ ଲୀଳା ହୁଏ ॥
ଶଶୀରେଖା ସଙ୍ଗତେ ପୁଣ । ଯାଦବ କରେ ଲୀଳା ଜାଣ ॥
ସୁନନ୍ଦ ଲୀଳାବତୀ ସଙ୍ଗେ । ଲୀଳା କରନ୍ତି ନାନାରଙ୍ଗେ ॥
ମାଳନ୍ତ୍ରୀ ସଖୀ ସଙ୍ଗେ ଭାବ । ଭାବ କରଇ ବୃନ୍ଦ ନନ୍ଦ ॥
ସୁବଳ ମାଳତୀ ସଙ୍ଗେଣ । ଲୀଳା କରନ୍ତି ସେ ମିଳଣ ॥
ସେବତୀ ସଖୀ ସଙ୍ଗେ ରସ । ସୁରଥ ମିଳଣ ହରଷ ॥
ମରୁଆ ସଖୀ ସଙ୍ଗେ ମିଳି । ଲୋକପାଳ ସେ କରେ କେଳି ॥
ଦଅଣା ସଖୀ ସଙ୍ଗେ ରଙ୍ଗ । ଧରମାନନ୍ଦ ସେ ଖେଳଇ ॥
ରେବତୀ ସଙ୍ଗେ ବଳଦେବ । ଲୀଳା ସେ ଯୁଗଳରେ ଭାବ ॥
ଏମନ୍ତେ ଅଷ୍ଟାଦଶ ଗୋପୀ । ବୃନ୍ଦାବନରେ ଲୀଳା ସ୍ଥାପି ॥
ରାଧା ଅଙ୍ଗରୁ ଗୋପୀଗଣ । ରେବତୀ ଜନମ ସେ ପୁଣ ॥
ରେବତୀଠାରୁ ଷୋଳ ଗୋପୀ । ଷୋଳ ସହସ୍ର ଗୋପୀ ବ୍ୟାପୀ ॥
ଗୋପୀ ଗୋଟିକେ ଷୋଳ ସସ୍ର । ଗୋପାଳ କରନ୍ତି ରାହାସ ॥
ସହସ୍ର ସହସ୍ର ହୋଇଲେ । ଗୋପୀ ଗୋପାଳ ଲୀଳା କଲେ ॥
ବଳଦେବ ଅଙ୍ଗରୁ ଜାତ । ଗୋପାଳ ହୋଇଲେ ସମ୍ଭୂତ ॥
ଏଣୁ ଅନନ୍ତ ଅଙ୍ଗ ସାର । ଅନନ୍ତ ଗୋପାଳ ସୁମର ॥
ଅନନ୍ତ ମୂଳେ ଗୋପ ପୋଏ । ରେବତୀ ମୂଳେ ଗୋପୀ ଥାଏ ॥
ଏଣୁଟି ମନ୍ତ୍ର ହରେ ଅଙ୍ଗ । ଭଜନ କରନ୍ତୁ ବୈରାଗ୍ୟ ॥
ପଛେଣ କୃଷ୍ଣ ନାମ ଧରି । ତୃତୀୟେ ରାମ ସେ ସୁମରି ॥
ଚତୁର୍ଥେ ପୁଣ ହରେ ଜପ । ଲେଉଟ ପାଲଟ ରେ ବାପ ॥
ହରେ ରାମରେ ବଳଦେବ । ରେବତୀ ହରି ନାମେ ଠାବ ॥
କୃଷ୍ଣର ନାମେ ରାଧା ରହେ । ରାମ ନାମରେ ରାଧା ଥାଏ ॥
ରାମ ନାମରେ ସେ ରେବତୀ । ରାମ ନାମରେ ରାଧା ଛନ୍ତି ॥
ହରେ କୃଷ୍ଣ ସେ ରାମ ତନ୍ତ୍ର । ଭଜନ୍ତି ସାଧୁ ସନ୍ଥ ମୁନି ॥
ହରେ ରାମ କୃଷ୍ଣ ସେ ସାର । କଳିରେ ଚୈତନ୍ୟ ଠାକୁର ॥

ଉକ୍ତ ନାମକୁ ସାର କଲେ । ତେର ନାମକୁ ଲୁଚ୍ଛାଇଲେ ॥
ହରେ ରାମକୁ ହରେ କୃଷ୍ଣ । ମନ୍ତ୍ରକୁ କଲେକ ଯତନ ॥
ରସ ଗୁଣକୁ ବୁଝାଇଲେ । ନିର୍ଗୁଣ ରସ ଲୁଚ୍ଛାଇଲେ ॥
ନୀଳାଚଳରେ ନିର୍ଗୁଣ । କହିଲେ ସ୍ୱରୂପ ଭେଟଣ ॥
କହିଲେ ଜଗନ୍ନାଥ ଦାସ । ଗୁପତେ ନିର୍ଗୁଣ ପ୍ରକାଶ ॥
ଭଗବାନ ଯେ ଦାସ କହି । ଯଶୋବନକୁ କୃପା ବହି ॥
ଶିଶୁ ଦାସକୁ ଯେ କହିଲେ । ଅଚ୍ୟୁତ ମତେ ବୁଝାଇଲେ ॥
ଭଇର୍ଣ୍ଣ ଦାସକୁ କହିଲେ । ବଳରାମ ଦାସ ଜାଣିଲେ ॥
ଏତେ ଭକତଙ୍କୁ ଗୁପତେ । କହିଲେ ଚୈତନ୍ୟ ଏକାନ୍ତେ ॥
ଚବଣ ଗୋପ ପୋଏ ଶୁଣ । ଅଚ୍ୟୁତ ରସ ଏ ପ୍ରମାଣ ॥

ଇତି ଶ୍ରୀ ଗୁରୁଭକ୍ତ ଗୀତା ତୃତୀୟଖଣ୍ଡେ
ସଖୀ ସଖାମାନଙ୍କ ଲୀଳାକଥନେ
ନାମ ଚତ୍ୱାରିଂଶ ପଟଳ ।

---

## ଏକଚତ୍ୱାରିଂଶ ପଟଳ

ମୁକୁନ୍ଦ ଅନନ୍ତ ଆନନ୍ଦ । ପବନ ବସ୍ତ୍ର ଯେ ଗୋବିନ୍ଦ ॥
ବାଳକ ଦାସ ଯେ ପୁଚ୍ଛଇ । ମଣୋହି କେଉଁ ମନ୍ତ୍ରେ ହୋଇ ॥
ଶୁଣ ହେ ଅମଣିଆ ଦାସ । କହିବା ମନ୍ତ୍ର ଉପଦେଶ ॥
କ୍ଲୀଁ ବୀଜ ଯେ ଯାହା କହି । ସେ ପୁଣ କୃଷ୍ଣ ଯେ ଅଟଇ ॥
ଗୋବିନ୍ଦାୟ ଯେ ମୁଖ ଜାଣ । ଗୋପୀଜନ ଯେ ଶିର ପୁଣ ॥
ବଲ୍ଲଭାୟ ଯେ କଟି ହୋଇ । ନମଃ ଯେ ଅଟେ ପାଦ ଦୁଇ ॥
ଗୋବିନ୍ଦାୟ ନୟନ ଦୁଇ । ଗୋପୀଜନ ନାସିକା କହି ॥
ବ ଯେ ହୃଦ ବୋଲି ଜାଣ । ଲ ଯେ ନାଭି ପରମାଣ ॥
ଭଆ ଯେ କଟି ବୋଲି କହି । ସ୍ୱ ଯେ ଲିଙ୍ଗଟି ଅଟଇ ॥
କ୍ଲାଂ କପୋଳ ଯେ ଅଟଇ । ଏମନ୍ତେ କୃଷ୍ଣ ରୂପ ହୋଇ ॥

